ଭାରତ ପ୍ରଦୀପ

# ଗୁରୁଜୀ

ଶ୍ରୀ ଭଗୀରଥି ନେପାକ୍

ସୁଧାଂଶୁ ପ୍ରକାଶନ

କଟକ-୯

ଭାରତ ପ୍ରତାପ—ଗୁରୁଜୀ

ଲେଖକ :—

ଭଗୀରଥି ନେପାକ୍

ପ୍ରକାଶକ :

ସୁଧାଂଶୁ ପ୍ରକାଶନ
କଟକ-୯

ପରିବେଶକ :—

ଶ୍ରୀନିବାସ ଗୁରୁ
ଗୁରୁଜୀ ବୁକ୍‌ଷ୍ଟଲ
କଟକ-୯

ରଙ୍ଗତୁଳୀ :—

କେଦାର ରାଉତ
ସୁନାମଣି ସାମଲ

ପ୍ରଥମ ପ୍ରକାଶ :—୧୯୮୫

ମୁଦ୍ରଣ :—ଗୁରୁଜୀ ପ୍ରିଣ୍ଟର୍ସ

ମୂଲ୍ୟ—୩-୦୦

# ରାଧାକୃଷ୍ଣନ୍

ପୃଥିବୀରେ ପ୍ରତି ମୁହୂର୍ତ୍ତରେ ବହୁ ଶିଶୁ ଜନ୍ମ ହୁଅନ୍ତି, କିନ୍ତୁ ସେମାନେ ସମସ୍ତେ ଏକାଧାରରେ ଶିକ୍ଷକ, ଲେଖକ, ବାଗ୍ମୀ, ଦାର୍ଶନିକ, ରାଷ୍ଟ୍ରପତି ଓ ବିଶ୍ୱବିଖ୍ୟାତ ହୋଇପାରନ୍ତି ନାହିଁ । କିନ୍ତୁ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କଠାରେ ଏ ସମସ୍ତ ଗୁଣର ସମାବେଶ ଘଟିଥିଲା । ସେ ଏକାଧାରରେ ଥିଲେ ଶିକ୍ଷକ, ସୁଲେଖକ, ସୁବକ୍ତା, ଓ ଦାର୍ଶନିକ । ଅବଶେଷରେ ସେ ଭାରତବର୍ଷର ସର୍ବୋଚ୍ଚ ରାଷ୍ଟ୍ରପତି ପଦବୀ ମଣ୍ଡନ କରି ବିଶ୍ୱବିଖ୍ୟାତ ହୋଇଗଲେ ।

ରାଧାକୃଷ୍ଣନ୍ ରାଷ୍ଟ୍ରପତି ରୂପେ ନିର୍ବାଚିତ ହେବାପରେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁ କହିଥିଲେ, "ମୁଁ ଅନ୍ୟମାନଙ୍କ ସହିତ ଆମ ଭାରତର ଶାସନମୁଖ୍ୟ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ନିକଟରେ ଭକ୍ତି ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ସର୍ବୋପରି ସେ ଜଣେ ମହାନ୍ ଗୁରୁ ଅଟନ୍ତି । ତାଙ୍କ ପାଖରୁ ଆମ୍ଭେମାନେ ଅନେକ ବିଷୟ ଶିକ୍ଷା କରିଅଛୁ ଏବଂ ଭବିଷ୍ୟତରେ ମଧ୍ୟ ଶିକ୍ଷା କରିବୁ । ଏହା ଆମ ଦେଶ ପକ୍ଷରେ ଏକ ଗୌରବର ବିଷୟ ଯେ, ଜଣେ ଉଚ୍ଚକୋଟୀର ଦାର୍ଶନିକ, ମହାନ୍ ଶିକ୍ଷାବିତ୍ ଏବଂ ଶ୍ରେଷ୍ଠ ମାନବପ୍ରେମୀ ଆମ ଦେଶର ରାଷ୍ଟ୍ରନାୟକ ହୋଇ ପାରିଛନ୍ତି ।" ଇତ୍ୟାଦି ।

ରାଧାକୃଷ୍ଣନ୍ କେବଳ ଭାରତବର୍ଷରେ ନୁହେଁ, ସମଗ୍ର ପୃଥିବୀରେ ଜଣେ ଉଚ୍ଚକୋଟୀର ଦାର୍ଶନିକ ମହାନ୍ ଶିକ୍ଷାବିତ୍ ଏବଂ ଶ୍ରେଷ୍ଠମାନବ ପ୍ରେମୀ ଭାବରେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କର ଅସାଧାରଣ ପାଣ୍ଡିତ୍ୟ, କର୍ତ୍ତବ୍ୟନିଷ୍ଠା, ମାନବିକତା ଓ ନିଃସ୍ୱାର୍ଥପର ଜନସେବା ହେତୁ ତାଙ୍କୁ ଭାରତର ଶ୍ରେଷ୍ଠ ଜାତୀୟ ସମ୍ମାନ 'ଭାରତରତ୍ନ' ଉପାଧିରେ ମଣ୍ଡନ କରାଯାଇଥିଲା ।

## ରାଧାକୃଷ୍ଣନ୍‌ଙ୍କ ଜନ୍ମସ୍ଥାନ ଓ ପରିବାର

ରାଧାକୃଷ୍ଣନ୍ ମାନ୍ଦ୍ରାଜର ଏକ ଗ୍ଲେଟ ଗାଁରେ ୧୮୮୮ ମସିହା ସେପ୍ଟେମ୍ବର ୫ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଗାଁର ନାମ 'ସର୍ବପଲ୍ଲୀ' ହୋଇଥିବାରୁ ଦକ୍ଷିଣ ଭାରତୀୟ ପ୍ରଥାମତେ, ତାଙ୍କର ରାଧାକୃଷ୍ଣନ୍ ନାଁ ଆଗରୁ 'ସର୍ବପଲ୍ଲୀ' ଶବ୍ଦ ସଂଯୋଗ କରାଯାଇଥିଲା ।

ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ପିତାଙ୍କ ନାମ ବୀରସ୍ୱାମୀ । ସେ ଜାତିରେ ବ୍ରାହ୍ମଣ । ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ ପୁରୋହିତ କର୍ମ କରି ପରିବାର ପୋଷୁଥିଲେ ।

ବୀରସ୍ୱାମୀଙ୍କ ପରିବାରରେ ପତ୍ନୀଙ୍କ ବ୍ୟତୀତ ପାଞ୍ଚଜଣ ପୁତ୍ର ଓ କନ୍ୟା ଥିଲେ । ପୁରୋହିତ କର୍ମ କରି ପରିବାର ପରିପୋଷଣ କରିବା ସହଜ ନୁହେଁ । ଏପରି ସ୍ଥଳେ ପୁଅ ଝିଅଙ୍କୁ ଉଚିତ ଶିକ୍ଷା ଦାନକରି ମଣିଷ ରୂପେ ଛିଡ଼ା କରିବା କଣ ସମ୍ଭବ ? ସେଥିପାଇଁ ସେ ଅନ୍ୟମାନଙ୍କ ଦ୍ୱାରସ୍ଥ ହେବାକୁ ବାଧ୍ୟ ହେଉଥିଲେ ।

ସେହି ସମୟରେ ଖ୍ରୀଷ୍ଟିଆନ୍ ମିଶନାରୀମାନେ ଭାରତବର୍ଷର ବିଭିନ୍ନ ସ୍ଥାନରେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରି ଇଂରେଜୀ ଭାଷାର ପ୍ରଚାର ଓ ପ୍ରସାର କରୁଥିଲେ । ଏହିପରି ଏକ ଶିକ୍ଷାନୁଷ୍ଠାନରେ

ରାଧାକୃଷ୍ଣନ୍‌ଙ୍କ ବାଲ୍ୟଶିକ୍ଷା ଆରମ୍ଭ ହୋଇଥିଲା । ସେ ଖ୍ରୀଷ୍ଟିଆନମାନଙ୍କ ଅନୁଷ୍ଠାନରୁ ଆର୍ଥିକ ସାହାଯ୍ୟ ଲାଭ କରି ଅଧ୍ୟୟନ କରୁଥିଲେ ।

## ରାଧାକୃଷ୍ଣନ୍‌ଙ୍କ ବାଲ୍ୟକାଳ

ରାଧାକୃଷ୍ଣନ୍‌ଙ୍କ ବାଲ୍ୟକାଳ ଅଭାବ ଅସୁବିଧାରେ ଅତିବାହିତ ହୋଇଥିଲା ।

ସେ ସ୍ୱଭାବତଃ ଭୟାଳୁ ଓ ଲଜ୍ଜାଶୀଳ ଥିଲେ । ସହପାଠୀମାନଙ୍କ ସହିତ ଖେଳ କୌତୁକରେ ମାତି ସମୟ ନଷ୍ଟ କରିବାର ପକ୍ଷପାତୀ ସେ ନଥିଲେ । ବିଦ୍ୟାଳୟରେ ଯାହା ପଢ଼ା ହେଉଥିଲା, ଘରକୁ ଫେରିଆସି ନିରୋଳାରେ ବସି ସେ ସବୁ ବିଷୟରେ ଚିନ୍ତା କରିବା ତାଙ୍କ ଅଭ୍ୟାସରେ ପରିଣତ ହୋଇ ଯାଇଥିଲା ।

ରାଧାକୃଷ୍ଣନ୍ ଶାନ୍ତ, ଶିଷ୍ଟ, ସରଳମନା ଥିଲେ । ଭବିଷ୍ୟତରେ ସେ ଯେ ଜଣେ ସୁବକ୍ତା ଓ ସୁଲେଖକ ହେବେ, ତାଙ୍କର ବାଲ୍ୟ ଜୀବନରେ ତାହାର କୌଣସି ଆଭାସ ମିଳୁ ନଥିଲା । ଆଉ ପାଞ୍ଚ ଜଣ ସାଧାରଣ ବାଳକଙ୍କ ପରି ସେ ଚଳାଚଳ ହେଉଥିଲେ ।

କିନ୍ତୁ ବାଲ୍ୟକାଳରୁ ତାଙ୍କର ସ୍ମୃତିଶକ୍ତି ପ୍ରବଳ ଦେଖା ଯାଉଥିଲା । ସେ ଥରେ ଯାହା ପଢୁଥିଲେ ବା ଶୁଣୁଥିଲେ, ତାହା ତାଙ୍କର ମନେ ରହି ଯାଉଥିଲା । ସେ ପ୍ରତ୍ୟେକ ସହପାଠୀଙ୍କର ଡାକନାମ ସୁଦ୍ଧା ମନେ ରଖିଥିଲେ । କି ଛାତ୍ର କି ଶିକ୍ଷକ, ସମସ୍ତଙ୍କ ପ୍ରତି ଭଦ୍ର ବ୍ୟବହାର ପ୍ରଦର୍ଶନ କରୁଥିଲେ । ତେଣୁ ସେ ବୟସ ନିର୍ବିଶେଷରେ ସମସ୍ତଙ୍କର ସ୍ନେହ ଓ ଶ୍ରଦ୍ଧା ଅର୍ଜନ କରି ପାରୁଥିଲେ ।

ଦାରିଦ୍ର୍ୟ ହେତୁ ସମସ୍ତ ସମୟରେ ତାଙ୍କ ମନରେ ଦୁଶ୍ଚିନ୍ତା ଦେଖା ଦେଉଥିଲା । ଭବିଷ୍ୟତ କଥା ଚିନ୍ତାକରି ସେ ବିବ୍ରତ ହୋଇ

ପଡ଼ୁଥିଲେ । କିନ୍ତୁ ତାହାଥିଲା ସାମୟିକ ଅବସ୍ଥା ମାତ୍ର । ପର ମୁହୂର୍ତ୍ତରେ ସବୁ କଥା ଭୁଲି ସେ ଉପସ୍ଥିତ କର୍ତ୍ତବ୍ୟରେ ମନଯୋଗ ଦେଉଥିଲେ ।

ସାଧାରଣ ପୋଷାକ ପରିଧାନ କରିବା ତାଙ୍କ ଅଭ୍ୟାସରେ ପରିଣତ ହୋଇ ଯାଇଥିଲା । ଛାତ୍ର ଜୀବନରେ ସେ ଯେଉଁ ପ୍ରକାର ଧୋତି, ଲମ୍ବାକୋଟ ଓ ପଗଡ଼ି ବ୍ୟବହାର କରୁଥିଲେ, ଅଧ୍ୟାପକ ତଥା ଜନ-ନାୟକ ଭାବରେ ମଧ୍ୟ ସେହି ପୋଷାକ ପରିଧାନ କରିଥିଲେ ।

ଅତି ବାଲ୍ୟକାଳରୁ ପ୍ରଭୁ ଭେଙ୍କଟେଶ୍ୱରଙ୍କ ପ୍ରତି ତାଙ୍କର ଗଭୀର ଭକ୍ତି ପ୍ରକାଶ ପାଉଥିଲା ।

## ଛାତ୍ର ଜୀବନ

ରାଧାକୃଷ୍ଣନ୍ ଖ୍ରୀଷ୍ଟିଆନ୍ ମିଶନାରୀମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଏକ ଶିକ୍ଷାନୁଷ୍ଠାନରେ ବାଲ୍ୟଶିକ୍ଷା ସମାପ୍ତ କରିଥିଲେ ।

ବାଲ୍ୟଶିକ୍ଷା ସମାପ୍ତି ପରେ ସେ ମାନ୍ଦ୍ରାଜ ସହରକୁ ଯାତ୍ରା କଲେ ଓ ଖ୍ରୀଷ୍ଟିଆନ୍ କଲେଜରେ ଉଚ୍ଚଶିକ୍ଷା ଆରମ୍ଭ କରିଥିଲେ ।

ସେତେବେଳେ ଖ୍ରୀଷ୍ଟିଆନ୍ ମିଶନାରୀମାନେ ଖ୍ରୀଷ୍ଟଧର୍ମ ପ୍ରଚାରରେ ଲାଗି ପଡ଼ିଥିଲେ । ଯେଉଁମାନେ ଖ୍ରୀଷ୍ଟଧର୍ମ ଗ୍ରହଣ କରୁଥିଲେ, ସେମାନଙ୍କୁ ନାନା ପ୍ରକାର ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଇଥିଲା । ଖ୍ରୀଷ୍ଟିଆନ୍‌ମାନଙ୍କୁ ସରକାରୀ ଚାକିରୀ, ଜମିବାଡ଼ି ଯୋଗାଇ ଦିଆଯାଉଥିଲା । ବ୍ୟବସାୟ କ୍ଷେତ୍ରରେ ସେମାନେ ପ୍ରଥମ ସୁବିଧା ଲାଭ କରୁଥିଲେ । ସେଥିପାଇଁ ବହୁ ଭାରତୀୟ ହିନ୍ଦୁଧର୍ମ ଛାଡ଼ି ଖ୍ରୀଷ୍ଟିଆନ ହୋଇ ଯାଉଥିଲେ ।

କିନ୍ତୁ ପ୍ରଭୁ ଭେଙ୍କଟେଶ୍ୱରଙ୍କ ନିଷ୍ଠାପର ଭକ୍ତ ରାଧାକୃଷ୍ଣନ୍ ଖ୍ରୀଷ୍ଟିଆନ୍ ପାଦ୍ରୀମାନଙ୍କ ପ୍ରଲୋଭନକୁ ଆଖିଡ଼େଇ ଦେଇ ନିଜ ପଥରେ ଆଗେଇ ଚାଲିଥିଲେ । ବରଂ ହିନ୍ଦୁ ଧର୍ମର ନିନ୍ଦାକୁ ସହ୍ୟ କରି ନ ପାରି ପାଦ୍ରୀମାନଙ୍କର ହିନ୍ଦୁଧର୍ମ ବିରୋଧୀ ଯୁକ୍ତିକୁ ସଫଳତ ସହକାରେ ଖଣ୍ଡନ କରି ପାରୁଥିଲେ । ମିଶନାରୀମାନଙ୍କର ନିଜ ଧର୍ମ ପ୍ରତି ବିଶେଷ ଅନୁରାଗ ଥିଲା । ସେମାନେ ହିନ୍ଦୁ ଧର୍ମ ପ୍ରତି ଅସହିଷ୍ଣୁ ଭାବ ପ୍ରକାଶ କରି, ହିନ୍ଦୁଧର୍ମ ବିରୁଦ୍ଧରେ କୁତ୍ସାରଟନା କରୁଥିଲେ । ରାଧାକୃଷ୍ଣନ୍‌ଙ୍କୁ ଏସବୁ ଭଲ ଲାଗୁ ନଥିଲା । ପକ୍ଷାନ୍ତରରେ ମିଶନାରୀମାନଙ୍କ ସ୍ୱ-ଧର୍ମ ପ୍ରୀତି ଦେଖି, ସେ ସ୍ୱଧର୍ମ ପ୍ରତି ବିଶେଷ ଅନୁରାଗୀ ହୋଇ ପଡ଼ିଥିଲେ ।

ମିଶନାରୀ ସ୍କୁଲ କଲେଜରେ ଅଧ୍ୟୟନ କରିବା ଫଳରେ ସେ ଖ୍ରୀଷ୍ଟିଆନ ଧର୍ମ ଗ୍ରନ୍ଥ ବାଇବେଲ ତଥା ଇଂରାଜୀ ଭାଷା ସାହିତ୍ୟରେ ବ୍ୟୁତ୍ପତ୍ତି ଲାଭ କରିବାର ସୁଯୋଗ ପାଇଥିଲେ । ସେ ସତ୍ୟର ପୂଜାରୀ ଥିଲେ । ଖ୍ରୀଷ୍ଟଧର୍ମର ଭୁଲ୍‌ଭଟକାକୁ ସ୍ପଷ୍ଟ ଭାଷାରେ ଦର୍ଶାଇବାକୁ ସେ ପଶ୍ଚାତ୍‌ପଦ ହେଉ ନଥିଲେ । ଖ୍ରୀଷ୍ଟିଆନ୍ ସଂସ୍ଥାରୁ ଆର୍ଥିକ ସାହାଯ୍ୟ ଲାଭ କରି ମଧ୍ୟ, ଖ୍ରୀଷ୍ଟଧର୍ମର ବିରୋଧ କରିବା ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ । କିନ୍ତୁ ରାଧାକୃଷ୍ଣନ୍ ତାହା କରି ତାଙ୍କ ସ୍ୱାଧୀନଚେତା ମନର ପରିଚୟ ଦେଇଥିଲେ ।

ରାଧାକୃଷ୍ଣନ୍ ଛାତ୍ର ଜୀବନରୁ ହିନ୍ଦୁ ଶାସ୍ତ୍ର, ପୁରାଣ ପ୍ରତି ଗଭୀର ଅନୁରାଗ ଥିଲା । ତାଙ୍କ ସମୟରେ ସ୍ୱାମୀ ବିବେକାନନ୍ଦ ସନାତନ ହିନ୍ଦୁଧର୍ମ ସମ୍ପର୍କରେ ସାରଗର୍ଭକ ଭାଷଣମାନ ଦେଉଥିଲେ । ତାଙ୍କର ଭାଷଣ ପଢ଼ି ସେ ବେଦାନ୍ତ ଅଧ୍ୟୟନରେ ପ୍ରବୃତ୍ତ ହୋଇଥିଲେ ।

ପ୍ରଗାଢ଼ ଅଧ୍ୟବସାୟ ଓ ଆନ୍ତରିକ ଚେଷ୍ଟା ବଳରେ ରାଧାକୃଷ୍ଣନ୍ ମାନ୍ଦ୍ରାଜର ଖ୍ରୀଷ୍ଟ କଲେଜରୁ ୧୯୦୭ ଖ୍ରୀଷ୍ଟାବ୍ଦରେ ବି.ଏ. ପରୀକ୍ଷାରେ ଅନର୍ସ ହାସଲ କଲେ । ସେ ଦର୍ଶନଶାସ୍ତ୍ରରେ ଅନର୍ସ ସହ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାଶ କରିଥିଲେ । ଏହାର ଦୁଇବର୍ଷ ପରେ, ମାନ୍ଦ୍ରାଜ ବିଶ୍ବବିଦ୍ୟାଳୟରୁ ଦର୍ଶନଶାସ୍ତ୍ରରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍. ଏ. ପାଶ୍ କଲେ ।

## ଅଧ୍ୟାପକ ଚାକିରୀ

ଦର୍ଶନଶାସ୍ତ୍ରରେ ଏମ୍. ଏ. ପାଶ୍ କରିବା ପରେ ରାଧାକୃଷ୍ଣନ୍ ସେହି ବର୍ଷ ମାନ୍ଦ୍ରାଜ ପ୍ରେସିଡେନ୍ସି କଲେଜରେ ଦର୍ଶନଶାସ୍ତ୍ରର ଅଧ୍ୟାପକ ଭାବରେ ନିଯୁକ୍ତି ଲାଭକଲେ ।

ତାଙ୍କ ସମୟ ଭିନ୍ନ ଥିଲା, ଅବସ୍ଥା ଭିନ୍ନ ଥିଲା । ଅଧ୍ୟାପକମାନେ ଅଧ୍ୟାପନାଠାରୁ ଅଧ୍ୟୟନ ଉପରେ ବିଶେଷ ଗୁରୁତ୍ବ ଦେଉଥିଲେ । ବିନା ପ୍ରସ୍ତୁତିରେ ଅଧ୍ୟାପନା ପ୍ରକୋଷ୍ଠରେ ପାଦ ଦେବାକୁ ସଙ୍କୋଚ ବୋଧ କରୁଥିଲେ । ଶିକ୍ଷା କ୍ଷେତ୍ରରେ କୌଣସି ପ୍ରକାର ଦୁର୍ନୀତି ନଥିଲା । ଅଧ୍ୟାପକମାନଙ୍କୁ ସମାଜରେ ପ୍ରଭୂତ ସମ୍ମାନ ମିଳୁଥିଲା । ଅଧ୍ୟାପକ ଓ ଛାତ୍ରମାନଙ୍କ ମଧ୍ୟରେ ସୁସମ୍ପର୍କ ଥିଲା ।

କଲେଜରେ ଅଧ୍ୟାପକ ଭାବରେ ଯୋଗଦେବା ପରେ ସେ ସେହି କଲେଜରେ ଆଦର୍ଶର ପ୍ରତୀକ ହୋଇ ଉଠିଲେ । ତାଙ୍କର ଦର୍ଶନଶାସ୍ତ୍ରରେ ଗଭୀର ଜ୍ଞାନ ଥିଲା ଓ ତାହା ପ୍ରକାଶ କରିବାର ଭାଷା ଶୈଳୀ ଆକର୍ଷଣୀୟ ଥିଲା । ଏହା ଦେଖି ଛାତ୍ରମାନେ ବିମୁଗ୍ଧ ହୋଇ ଯାଉଥିଲେ । ବେଳେବେଳେ ସନ୍ଦେହ ମୋଚନ ନିମନ୍ତେ ଛାତ୍ରମାନେ ତାଙ୍କ ପାଖରେ ଆସି ହାଜର ହେଲେ, ସେ ଆଗ୍ରହ ସହକାରେ ସେମାନଙ୍କ ସନ୍ଦେହ ମୋଚନ କରି ଦେଉଥିଲେ ।

ଅର୍ଥାଭାବରୁ କୌଣସି ଛାତ୍ର ଆବଶ୍ୟକ ପୁସ୍ତକ କିଣିପାରୁ ନଥିଲେ, ଛାତ୍ରବତ୍ସଳ ରାଧାକୃଷ୍ଣନ୍ ନିଜ ହାତରୁ ପଇସା ଖର୍ଚ୍ଚ କରି ସେହି ପୁସ୍ତକ ଅଭାବୀ ଛାତ୍ରକୁ ଯୋଗାଇ ଦେଉଥିଲେ । କ୍ରମେ ରାଧାକୃଷ୍ଣନ ତାଙ୍କର ଛାତ୍ରମାନଙ୍କର କେବଳ ଅଧ୍ୟାପକ ଭାବରେ ନ ରହି, ସେମାନଙ୍କର ପିତା, ବନ୍ଧୁ ଓ ଶୁଭାକାଂକ୍ଷୀ ହୋଇ ପଡ଼ିଲେ ।

ଦର୍ଶନ ଏକ ଜଟିଳ ବିଷୟ ହେଲେ ହେଁ, ତାହା କ୍ରମେ ଛାତ୍ରମାନଙ୍କ ନିକଟରେ ସହଜ, ସରଳ ଓ ଆକର୍ଷଣୀୟ ହୋଇ ଉଠିଥିଲା ।

ରାଧାକୃଷ୍ଣନ୍ ଅଧ୍ୟାପକ ଜୀବନ ଆରମ୍ଭ କରିବା ପରେ ଦର୍ଶନ ଶାସ୍ତ୍ରରେ ଗଭୀର ଜ୍ଞାନ ଆହରଣ ପାଇଁ ବିଭିନ୍ନ ଶାସ୍ତ୍ର ପାଠ କରିବାକୁ ଲାଗିଲେ । ସେତେବେଳେ ଅଧ୍ୟାପକମାନେ ସମ୍ମାନସୂଚକ ଡକ୍ଟରେଟ୍ ଡିଗ୍ରୀ ହାସଲ କରିବା ପାଇଁ ବିଦେଶରେ ଥିବା ବିଶ୍ୱବିଦ୍ୟାଳୟକୁ ଗବେଷଣା କରିବାକୁ ଯାଉଥିଲେ । କିନ୍ତୁ ରାଧାକୃଷ୍ଣନ୍ କୌଣସି ବିଦେଶୀ ବିଶ୍ୱବିଦ୍ୟାଳୟକୁ ନଯାଇ ନିଜ ଦେଶରେ ହିଁ ଗବେଷଣାତ୍ମକ, ମୌଳିକ ସନ୍ଦର୍ଭ ପ୍ରଣୟନ କରି ଡକ୍ଟରେଟ୍ ଉପାଧି ହାସଲ କରିଥିଲେ । ଏହା ଅଧ୍ୟାପକମାନଙ୍କ ମଧ୍ୟରେ ଚହଳ ସୃଷ୍ଟି କରିଥିଲା ।

## ମାନ୍ଦ୍ରାଜରୁ ମହୀଶୂର ବିଶ୍ୱବିଦ୍ୟାଳୟ

୧୯୧୮ ମସିହାରେ ନବପ୍ରତିଷ୍ଠିତ ମହୀଶୂର ବିଶ୍ୱବିଦ୍ୟାଳୟରେ ଦର୍ଶନ ବିଭାଗର ମୁଖ୍ୟ ଅଧ୍ୟାପକ ପଦ ଖାଲି ପଡ଼ିଲା । ଏଥିପାଇଁ ରାଧାକୃଷ୍ଣନ୍‌ଙ୍କୁ ଅନୁରୋଧ କରାଯିବାରୁ ସେ ଉକ୍ତ ଅନୁରୋଧ ରକ୍ଷା କରି ମହୀଶୂର ବିଶ୍ୱବିଦ୍ୟାଳୟରେ ଯୋଗ ଦେଲେ ।

ମହୀଶୂର ବିଶ୍ୱବିଦ୍ୟାଳର ଦର୍ଶନ ବିଭାଗର ଛାତ୍ରଛାତ୍ରୀ-ମାନେ ପ୍ରବୀଣ ଅଧ୍ୟାପକ ରାଧାକୃଷ୍ଣନ୍‌ଙ୍କ ସାନ୍ନିଧ୍ୟ ଲାଭକରି ନିଜକୁ

ଧନ୍ୟ ମନେ କଲେ ଓ ତାଙ୍କର ଅଧ୍ୟାପନା ଶୈଳୀ ଦେଖି ବିମୁଗ୍ଧ ହେଲେ । ମହୀଶୂର ରାଜ୍ୟର ଅନ୍ୟ କଲେଜରେ ପଢ଼ୁଥିବା ଛାତ୍ରମାନେ ଆସି ରାଧାକୃଷ୍ଣନ୍‌ଙ୍କ ବକ୍ତୃତା ଶୁଣୁଥିଲେ । ସେତେବେଳେ ରାଧାକୃଷ୍ଣନ୍‌ଙ୍କ ବକ୍ତୃତା ଶୁଣିବା ସୌଭାଗ୍ୟର ବିଷୟରୂପେ ବିବେଚିତ ହେଉଥିଲା ।

ଡକ୍ଟର ରାଧାକୃଷ୍ଣନ୍ ମହୀଶୂର କଲେଜରେ ଅଧ୍ୟାପକ ଥିବା ସମୟରେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ଇଞ୍ଜିନିୟର ସାର୍ ବିଶ୍ୱେଶ୍ୱରୟା ମହୀଶୂରର ମହାରାଜା କଲେଜରେ ତାଙ୍କୁ ଅଧ୍ୟାପକ ଭାବରେ ନିଯୁକ୍ତି ଲାଭ କରିବାର ସମସ୍ତ ବ୍ୟବସ୍ଥା କରିଦେଇଥିଲେ । ଏହି ସମୟରେ ରାଧାକୃଷ୍ଣନ ଅଧ୍ୟାପନା, ଅଧ୍ୟୟନ ଏବଂ ତଥ୍ୟପୂର୍ଣ୍ଣ ସନ୍ଦର୍ଭ ଲେଖିବାରେ ତାଙ୍କର ସମସ୍ତ ସମୟ ଅତିବାହିତ କରୁଥିଲେ । ତାଙ୍କର ଇଂରାଜୀ ଭାଷାରେ ଉଚ୍ଚାରଣ ଅତ୍ୟନ୍ତ ସ୍ପଷ୍ଟ ଓ ଚିତ୍ତାକର୍ଷକ ଥିଲା । ଇଂରାଜୀ ଭାଷାରେ ତାଙ୍କର ଅସାଧାରଣ ଦକ୍ଷତା ଦେଖି, ମହୀଶୂରର କେତେକ ଛାତ୍ର କୌତୂହଳ ବଶତଃ ଥରେ ତାଙ୍କୁ ପ୍ରଶ୍ନ କଲେ; ସାର୍, ଆପଣ କୌଣସି ପାଶ୍ଚାତ୍ୟ ବିଶ୍ୱବିଦ୍ୟାଳୟରେ ପଢ଼ି ଡିଗ୍ରୀ ପାଇଥିଲେ କି ? "ରାଧାକୃଷ୍ଣନ୍ ଏ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ହସି ହସି କହିଥିଲେ, "ବିଦେଶୀ ବିଶ୍ୱବିଦ୍ୟାଳୟରେ ମୁଁ ପଢ଼ି ନାହିଁ, କିନ୍ତୁ ପଢ଼ାଇବାକୁ ଯିବି ?" ଏହି ତାଙ୍କର ଗଭୀର ଆତ୍ମବିଶ୍ୱାସକୁ ସାବ୍ୟସ୍ତ କରିଥାଏ । ଡକ୍ଟର ରାଧାକୃଷ୍ଣନ୍ ମହୀଶୂର ବିଶ୍ୱବିଦ୍ୟାଳୟରେ ଥିଲାବେଳେ କଲିକତା ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗର ପ୍ରଧାନ ଅଧ୍ୟାପକ ପଦ ଖାଲି ପଡ଼ିଲା । ଏହି ପଦରେ ଥିବା ସୁନାମଧନ୍ୟ ଅଧ୍ୟାପକ ବ୍ରଜେନ୍ଦ୍ରନାଥ ଶିଲ୍ ମହୀଶୂର ବିଶ୍ୱବିଦ୍ୟାଳୟର କୁଳପତି ହୋଇ ଚାଲିଗଲେ । ଏହି ସମୟରେ କଲିକତା ବିଶ୍ୱବିଦ୍ୟାଳୟ କେବଳ ପଶ୍ଚିମାକାଶ

ବିଶ୍ୱବିଦ୍ୟାଳୟ ନ ହୋଇ ମହାନ୍ ଶିକ୍ଷାବିତ୍ ସାର୍ ଆଶୁତୋଷ ମୁଖାର୍ଜିଙ୍କର ଉଦ୍ୟମ ଫଳେ ଭାରତର ସର୍ବପ୍ରଥମ ଶିକ୍ଷାଦାନକାରୀ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଥାଏ । ଦେଶର ବିଭିନ୍ନ ପ୍ରାନ୍ତରୁ ଅଭିଜ୍ଞ ଅଧ୍ୟାପକମାନେ କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥାନ୍ତି । ଦର୍ଶନ ବିଭାଗରେ ଖାଲି ପଡ଼ିଥିବା ସ୍ଥାନ ପୂରଣ ନିମନ୍ତେ ସେ ମନେ ମନେ ଡକ୍ଟର ରାଧାକୃଷ୍ଣନ୍‌ଙ୍କୁ ହିଁ ବାଛିଲେ । ତାଙ୍କର ଉଦ୍ୟମରେ ବିଶ୍ୱବିଦ୍ୟାଳୟର ସ୍ୱତନ୍ତ୍ର କମିଟି, ସିଣ୍ଡିକେଟ୍ ତଥା ଭାରତ ସରକାର ଡକ୍ଟର ରାଧାକୃଷ୍ଣନ୍‌ଙ୍କ ନିଯୁକ୍ତିକୁ ଗ୍ରହଣ କରିନେଇଥିଲେ ।

ଡକ୍ଟରରାଧାକୃଷ୍ଣନ୍ ମହୀଶୂରରେ ଥିଲାବେଳେ ହିଁ କଲିକତା ବିଶ୍ୱବିଦ୍ୟାଳୟର ନିଯୁକ୍ତି ପତ୍ର ମିଳିଲା । ଏହା ୧୯୨୧ ମସିହାର କଥା । ସେ ରେଳ ଯୋଗେ ମହୀଶୂରରୁ କଲିକତା ବାହାରିଲେ । ସେ ଦିନ ଦେଖାଗଲା, ମହୀଶୂର ରେଳ ପ୍ଲାଟ୍‌ଫର୍ମ ଲୋକାରଣ୍ୟ ହୋଇଉଠିଛି. ଅସଂଖ୍ୟ ଲୋକ ରାଧାକୃଷ୍ଣନ୍‌ଙ୍କୁ ବିଦାୟ ଦେବାପାଇଁ ପ୍ଲାଟ୍‌ଫର୍ମରେ ଜୁଣ୍ଡ ହୋଇଛନ୍ତି । ଛାତ୍ରଛାତ୍ରୀମାନଙ୍କ ଆଖିରେ ଲୁହ ଟଳମଳ ହେଉଥାଏ । ରାଧାକୃଷ୍ଣନ୍ ଏ ଦୃଶ୍ୟ ଦେଖି ବିହ୍ୱଳ ହେଲେ । ଭିଜା ଭିଜା, କଣ୍ଠରେ କହିଲେ, ମିଳନ ଓ ବିଚ୍ଛେଦ ଏ ଜଗତର ରୀତି ଅଟେ । କାର୍ଯ୍ୟ ଉପଲକ୍ଷେ କାହାକୁ କେଉଁଠିକି ଯିବାକୁ ପଡ଼ିବ, କହି ହୁଏ ନାହିଁ । ତୁମ୍ଭମାନଙ୍କର ସ୍ନେହ ଓ ଶ୍ରଦ୍ଧାର ସ୍ମୃତି ନେଇ ମୁଁ ଯାଉଛି । ପୁଣି ଦେଖାହେବ ।

## କଲିକତା ବିଶ୍ୱବିଦ୍ୟାଳୟରେ ରାଧାକୃଷ୍ଣନ୍

ଡକ୍ଟର ଶିଲ୍ ଥିଲେ କଲିକତା ବିଶ୍ୱବିଦ୍ୟାଳୟର ଜଣେ ଖ୍ୟାତନାମା ଅଧ୍ୟାପକ । ତାଙ୍କ ସ୍ଥାନ ଖାଲି ପଡ଼ିବାରୁ ସେ ସ୍ଥାନ

ପୂରଣ କଲେ ଡକ୍ଟର ରାଧାକୃଷ୍ଣନ୍ । କିନ୍ତୁ ସେତେବେଳେ ରାଧାକୃଷ୍ଣନ୍ ମାତ୍ର ତିରିଶ ବର୍ଷ ବୟସର ଯୁବକ । ସେଥିରେ ପୁଣି ତାଙ୍କର ବିଦେଶୀ ବିଶ୍ୱବିଦ୍ୟାଳୟର ଡିଗ୍ରୀ ନାହିଁ । ଏଥିରେ କଲିକତାର ଶିକ୍ଷା ଆୟତନରେ ଚହଳ ପଡ଼ିଗଲା । ଅନେକେ ବିଶ୍ୱବିଦ୍ୟାଳୟର ମନୋନୟନ କମିଟି ଓ ସାର୍ ଆଶୁତୋଷଙ୍କର ସମାଲୋଚନା କଲେ । କିନ୍ତୁ ସେ ସମାଲୋଚନାର ସ୍ୱର କ୍ରମେ ମଳିନ ପଡ଼ି ଆସିଲା । ରାଧାକୃଷ୍ଣନ୍ଙ୍କ ପ୍ରତିଭା, ପାଣ୍ଡିତ୍ୟ ଓ କାର୍ଯ୍ୟଦକ୍ଷତା ଦେଖି ସମସ୍ତେ ବିସ୍ମିତ ହେଲେ ।

ରାଧାକୃଷ୍ଣନ୍ କଲିକତା ବିଶ୍ୱବିଦ୍ୟାଳୟରେ ଯୋଗଦେବା ପରେ କେବଳ ଅଧ୍ୟୟନ ଓ ଅଧ୍ୟାପନା କାର୍ଯ୍ୟରେ ନିଜକୁ ବୁଡ଼ାଇ ରଖିଲେ । ଏହା ଦେଖି ସାର୍ ଆଶୁତୋଷ ମୁଖାର୍ଜି ତାଙ୍କୁ ବିଶ୍ୱବିଦ୍ୟାଳୟର ବିଭିନ୍ନ ପରିଚାଳନା ଓ ବିଚାର ଆଲୋଚନା କମିଟିମାନଙ୍କରେ ଭର୍ତ୍ତିକଲେ । ବିଭିନ୍ନ କମିଟିରେ ରହି ଡକ୍ଟର ରାଧାକୃଷ୍ଣନ୍ ତାଙ୍କର ପ୍ରଶାସନିକ ଦକ୍ଷତାର ପରିଚୟ ଦେଲେ ।

ଦର୍ଶନ ଓ କଳା ସମ୍ପର୍କରେ ବିସ୍ତୃତ ଆଲୋଚନାର ଦ୍ୱାର ଉନ୍ମୁକ୍ତ ରଖିବା ପାଇଁ ରାଧାକୃଷ୍ଣନ୍ କଲିକତାର ଶିକ୍ଷା କେନ୍ଦ୍ରରେ 'ଆର୍ଟସ୍ ଫାକଲ୍‌ଟି କ୍ଲବ୍' ପ୍ରତିଷ୍ଠା କରିଥିଲେ ।

କଲିକତା ବିଶ୍ୱବିଦ୍ୟାଳୟ ସହିତ ଡକ୍ଟର ରାଧାକୃଷ୍ଣନ୍ ପ୍ରାୟ କୋଡ଼ିଏ ବର୍ଷ କାଳ ସଂପୃକ୍ତ ଥିଲେ । ଏହି ସମୟରେ ସେ ବହୁ ତଥ୍ୟପୂର୍ଣ୍ଣ ପୁସ୍ତକମାନ ରଚନା କରିଥିଲେ ଓ ସୁଚିନ୍ତିତ ବକ୍ତୃତାମାନ ପରିବେଷଣ କରିଥିଲେ । ତଦ୍ୱାରା କେବଳ ଭାରତବର୍ଷରେ ନୁହେଁ, ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ରାଧାକୃଷ୍ଣନ୍ଙ୍କ ଖ୍ୟାତି ଓ ମର୍ଯ୍ୟାଦା ବୃଦ୍ଧି ଲାଭ କରିଥିଲା ।

# ବାଗ୍ମୀ ରାଧାକୃଷ୍ଣନ୍

ଡକ୍ଟର ରାଧାକୃଷ୍ଣନ୍ କେବଳ ଆଦର୍ଶ ଅଧ୍ୟାପକ ଓ ମହାନ୍ ପଣ୍ଡିତ ନଥିଲେ, ସେ ଥିଲେ ଜଣେ ଖ୍ୟାତିସମ୍ପନ୍ନ ସୁବକ୍ତା ।

ଇଂରାଜୀ ଭାଷାରେ ବକ୍ତୃତା ଦେଲାବେଳେ ତାଙ୍କ ମୁହଁରେ ବାଟ୍‌କଳ ବାଜୁ ନଥିଲା । ଲୋକେ ତାଙ୍କର ଭାଷା, ଭାବ ଓ ପରିବେଷଣ ଶୈଳୀ ଦେଖି ବିମୁଗ୍ଧ ହୋଇଯାଉଥିଲେ । ଥରେ ପ୍ରିନ୍ସେଟୋନ ଅଧିବେଶନରେ ଜଣେ ଫରାସୀ ଅଧ୍ୟାପକ ଇଂରାଜୀରେ ବକ୍ତୃତା ଦେବାକୁ ପ୍ରସ୍ତୁତ ହେଉଥିଲେ । ଇତ୍ୟବସରରେ ଡକ୍ଟର ରାଧାକୃଷ୍ଣନ ନିଜ ବକ୍ତୃତା ଆରମ୍ଭ କରିଦେଲେ । ତାଙ୍କ ବକ୍ତୃତା ଏତେ ଚମତ୍କାର ହେଲା ଯେ, ଘନ ଘନ କରତାଳିରେ ସଭାଗୃହ କମ୍ପି ଉଠିଲା । ଏହାପରେ ଫରାସୀ ଅଧ୍ୟାପକ ଆଉ ଇଂରାଜୀ ଭାଷାରେ ବକ୍ତୃତା ଦେବାକୁ ସାହସ କରି ନପାରି ଫରାସୀ ଭାଷାରେ ହିଁ ବକ୍ତୃତା ଦେଲେ ।

୧୯୨୬ ମସିହାରେ ଲଣ୍ଡନରେ ବ୍ରିଟିଶ୍ ସାମ୍ରାଜ୍ୟର ବିଶ୍ୱବିଦ୍ୟାଳୟ କଂଗ୍ରେସ ଓ ହାରଭର୍ଡ଼ ବିଶ୍ୱବିଦ୍ୟାଳୟରେ ଆନ୍ତର୍ଜାତିକ ଦର୍ଶନ କଂଗ୍ରେସ ଅନୁଷ୍ଠିତ ହୋଇଥିଲା । ଏହି ସବୁ ଆନ୍ତର୍ଜାତିକ ସମ୍ମିଳନୀରେ ଡକ୍ଟର ରାଧାକୃଷ୍ଣନ ଯୋଗଦେଇ ଯେଉଁ ବକ୍ତୃତାମାନ ଦେଇଥିଲେ ତହିଁରେ ଜନସାଧାରଣ ତଥା ପାଶ୍ଚାତ୍ୟ ଦାର୍ଶନିକମାନେ ଚମତ୍କୃତ ହୋଇ ଯାଇଥିଲେ । ସେ ହାରଭର୍ଡ଼ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ଦର୍ଶନ-କଂଗ୍ରେସରେ ମାନବ ସଭ୍ୟତାର ବିଶ୍ଳେଷଣାତ୍ମକ ଆଲୋଚନା କରି ମନ୍ତବ୍ୟ ଦେଇଥିଲେ ଯେ, ବୈଜ୍ଞାନିକ କ୍ଷେତ୍ରରେ ମାନବ ସଭ୍ୟତା ସମୃଦ୍ଧ ହୋଇଥିଲେ ହେଁ, ନୈତିକତା ଓ ଆଧ୍ୟାତ୍ମିକତା କ୍ଷେତ୍ରରେ ନିମ୍ନସ୍ତରକୁ ଖସିଯାଇଛି ।

ତାଙ୍କର ଏ ମନ୍ତବ୍ୟ ସମଗ୍ର ବିଶ୍ୱବାସୀଙ୍କର ଦୃଷ୍ଟି ଆକର୍ଷଣ କରିବାରେ ସମର୍ଥ ହୋଇଥିଲା ।

ଡକ୍ଟର ରାଧାକୃଷ୍ଣନ୍ ଭିଜିଟିଙ୍ଗ୍ ପ୍ରଫେସର ଭାବରେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ 'ଇଷ୍ଟର୍ଣ୍ଣ୍ ଓ ଓ୍ୱେଷ୍ଟର୍ଣ୍ଣ୍ ରିଲିଜିଅନ୍' ଶିରୋନାମାରେ ସୁଚିନ୍ତିତ ବକ୍ତୃତାମାନ ପ୍ରଦାନ କରିଥିଲେ । ତାଙ୍କର ଏ ବକ୍ତୃତାମାଳା ପରେ ଗ୍ରନ୍ଥ ଆକାରରେ ପ୍ରକାଶିତ ହେଲା । ତାଙ୍କର ଏ ବକ୍ତୃତା ଭାରତୀୟ ଦର୍ଶନକୁ ସୁସ୍ପଷ୍ଟ କରିବାରେ ପରମ ସହାୟକ ହୋଇଥିଲା ।

କଲିକତା ବିଶ୍ୱବିଦ୍ୟାଳୟ ଡକ୍ଟର ରାଧାକୃଷ୍ଣନ୍‌ଙ୍କୁ ଇଂଲଣ୍ଡ ଯାଇ ଧାରାବାହିକ ଭାବରେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ 'ପ୍ରାଚ୍ୟଧର୍ମ ଓ ନୀତିଶାସ୍ତ୍ର' ସମ୍ପର୍କରେ ବକ୍ତୃତା ଦେବାପାଇଁ ପ୍ରତିବର୍ଷ ଜାନୁଆରୀ ଠାରୁ ଜୁନ ମାସ ପର୍ଯ୍ୟନ୍ତ ଛୁଟି ଦେବାର ବ୍ୟବସ୍ଥା କରିଥିଲେ । ୧୯୩[illegible] ମସିହା ଠାରୁ ୧୯୪୧ ମସିହା ପର୍ଯ୍ୟନ୍ତ ସେ ଦୁଇ ମହାଦେଶରେ ଅବସ୍ଥିତ ଦୁଇଟି ବିଶ୍ୱବିଦ୍ୟାଳୟରେ ଏକ ସମୟରେ ଅଧ୍ୟାପନା କାର୍ଯ୍ୟ ସମ୍ପାଦନ କରିବାରେ ମର୍ଥ ହୋଇଥିଲେ ।

ପୁଣି ଡକ୍ଟର ରାଧାକୃଷ୍ଣନ୍‌ଙ୍କ ପକ୍ଷରେ 'ଗୌରବର ବିଷୟ ଏହି ଯେ, ୧୯୩୯ ଓ ୧୯୪୦ ମସିହାରେ ସେ କଲିକତା ଓ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକତ୍ୱ କରିବା ସଙ୍ଗେ ସଙ୍ଗେ ବନାରସ ବିଶ୍ୱବିଦ୍ୟାଳୟର ଅସ୍ଥାୟୀ କୁଳପତି ଦାୟିତ୍ୱ ବହନ କରିଥିଲେ ।

୧୯୩୯ ମସିହାରେ ଡକ୍ଟର ରାଧାକୃଷ୍ଣନ୍ ବ୍ରିଟିଶ ଏକାଡେ଼ମୀରେ ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ ଏବଂ ୧୯୪୦ ମସିହାରେ 'ଫେଲୋ ଅଫ୍ ଅଲ୍ ସୋଲ୍ସ୍' ଉପାଧି ଲାଭ କରିଥିଲେ ।

# ଦାର୍ଶନିକ ରାଧାକୃଷ୍ଣନ୍

କଲିକତା ବିଶ୍ୱବିଦ୍ୟାଳୟ ସହିତ ସେ ପ୍ରାୟ କୋଡ଼ିଏ ବର୍ଷକାଳ ସମ୍ପୃକ୍ତ ଥିବାବେଳେ ଯେଉଁ ଗମ୍ଭୀର ତଥ୍ୟପୂର୍ଣ୍ଣ ପୁସ୍ତକମାନ ରଚନା କଲେ ଓସୁଚିନ୍ତିତ ବକ୍ତୃତାମାନ ପରିବେଷଣ କଲେ, ତଦ୍ଦ୍ୱାରା କେବଳ ଭାରତରେ ନୁହେଁ, ଆନ୍ତର୍ଜାତିକ କ୍ଷେତ୍ରରେ ଦାର୍ଶନିକ ଭାବରେ ତାଙ୍କର ସମ୍ମାନ ବୃଦ୍ଧି ଲାଭ କରିଥିଲା ।

ଅବଶ୍ୟ ରାଧାକୃଷ୍ଣନଙ୍କ ପୂର୍ବରୁ ଦାର୍ଶନିକ କାଣ୍ଟ୍ ଓ ମ୍ୟାକ୍ସମୁଲର ଭାରତର ଉନ୍ନତ ପରମ୍ପରା ଓ ସଂସ୍କୃତିର ମହତ୍ତ୍ୱକୁ ପୃଥିବୀ ସମକ୍ଷରେ ଉପସ୍ଥାପନ କରି ସମସ୍ତଙ୍କ ଦୃଷ୍ଟି ଭାରତ ଆଡ଼କୁ ଆକର୍ଷିତ କରିପାରିଥିଲେ । କିନ୍ତୁ ଡକ୍ଟର ରାଧାକୃଷ୍ଣନ୍‌ଙ୍କ ବକ୍ତୃତା ଓ ଗ୍ରନ୍ଥାବଳୀ ଯୋଗୁ ଭାରତୀୟ ଦର୍ଶନ ପ୍ରତି ପାଶ୍ଚାତ୍ତ୍ୟ ଦେଶବାସୀ ଅଧିକ ପରିମାଣରେ ଆକୃଷ୍ଟ ହେଲେ ।

ଆମେରିକା ଯୁକ୍ତରାଷ୍ଟ୍ରରେ ସେ 'ହିନ୍ଦୁ ଭ୍ୟୁ-ଅଫ୍ ଲାଇଫ୍' ସମ୍ପର୍କରେ ବକ୍ତୃତା ଦେଇ ଶ୍ରୋତାମାନଙ୍କୁ ଏହି ଧାରଣା ଦେବାରେ ସମର୍ଥ ହେଲେ ଯେ, ପ୍ରାଚୀନ ଭାରତର ପରମ୍ପରା, ସଂସ୍କୃତି ଓ ବିଚାରଧାରା ଅତ୍ୟନ୍ତ ଉନ୍ନତ । ଭାରତବର୍ଷର ଜ୍ଞାନଗରିମା ଅନ୍ୟ ଦେଶମାନଙ୍କ ତୁଳନାରେ କମ୍ ନୁହେଁ ।

ପ୍ରସଙ୍ଗ କ୍ରମେ ଉଲ୍ଲେଖ କରାଯାଇପାରେ ଯେ, ସ୍ୱାମୀ ବିବେକାନନ୍ଦ ତାଙ୍କର ଓଜସ୍ୱିନୀ ଭାଷଣ ମାଧ୍ୟମରେ ଏକଦା ପୃଥିବୀର ଦୃଷ୍ଟିକୁ ଭାରତବର୍ଷ ଆଡ଼କୁ ଆକୃଷ୍ଟ କରିବାରେ ସଫଳତା ହାସଲ କରିଥିଲେ । ଡକ୍ଟର ରାଧାକୃଷ୍ଣନ୍ ସ୍ୱାମୀ ବିବେକାନନ୍ଦଙ୍କ ଅଭିଭାଷଣରେ ଉଦ୍‌ବୁଦ୍ଧ ହୋଇଥିବା ଜଣାପଡ଼େ ।

ଦାର୍ଶନିକ ରାଧାକୃଷ୍ଣନ୍‌ଙ୍କର ବ୍ୟକ୍ତିଗତ ଦୃଷ୍ଟିଭଙ୍ଗୀ ସଙ୍କୀର୍ଣ୍ଣତାର ପରିଧି ଭିତରେ ଆବଦ୍ଧ ନଥିଲା । ସମଗ୍ର ଭାରତବର୍ଷକୁ

ସେ ଆପଣାର ମନେ କରୁଥିଲେ । ତଦୁପରି ପୃଥିବୀର ସବୁ ଦେଶ, ସବୁ ମଣିଷ ତାଙ୍କର ଅତି ଆପଣାର ଥିଲେ । ପୃଥିବୀର ତଥା ମଣିଷ ଜାତିର ମଙ୍ଗଳ ବିଧାନ ନିମନ୍ତେ ସେ ଆଜୀବନ ଉଦ୍ୟମ କରିଥିଲେ ।

ଆନ୍ତର୍ଜାତୀୟ ସମ୍ମିଳନୀମାନଙ୍କରେ ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନ ଉପରେ ଅଭିଭାଷଣମାନ ପ୍ରଦାନ କରି ଭାରତୀୟ ଦର୍ଶନର ଉତ୍କର୍ଷତା ପ୍ରତିପାଦନ କରିଥିଲେ । ହିନ୍ଦୁଧର୍ମ ସଂସ୍କୃତିର ପ୍ରକୃତ ସ୍ୱରୂପକୁ ସେ ଯେପରି ଭାବରେ ଉପସ୍ଥାପନ କରିଗଲେ, ତା'ର ତୁଳନା ନାହିଁ ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତର ବିଦଗ୍ଧ ଶ୍ରୋତା ଓ ଭାବୁକ-ମାନଙ୍କ ମତରେ ଡକ୍ଟର ରାଧାକୃଷ୍ଣନ୍ ଥିଲେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାଧାରା ମଧ୍ୟରେ ଏକ ଅପୂର୍ବ ସେତୁବନ୍ଧ ।

ଡକ୍ଟର ରାଧାକୃଷ୍ଣନ୍ ଥିଲେ ଜଣେ ଅନାସକ୍ତ କର୍ମଯୋଗୀ । ଧନ ମୋହ ତାଙ୍କୁ କେବେହେଲେ ଗ୍ରାସି ନଥିଲା । ଡକ୍ଟର ରାଧାକୃଷ୍ଣନ୍ ଭିନ୍ନ ଉପାଦାନର ମଣିଷ ଥିଲେ । ତାଙ୍କର ହୃଦୟ ନିର୍ମଳ ଓ ଶୁଦ୍ଧ ଥିଲା । କଥାରେ ଓ କାର୍ଯ୍ୟରେ ତାଙ୍କର ଅମେଳ ରହୁ ନ ଥିଲା । ଏହାହିଁ ଶ୍ରେଷ୍ଠ ଦାର୍ଶନିକର ଆଦର୍ଶ ଉଦାହରଣ । ହିନ୍ଦୁଧର୍ମ ଓ ସଂସ୍କୃତିର ମହାନ୍ ପ୍ରବକ୍ତା ଭାବରେ ସେ ଆନ୍ତର୍ଜାତିକ ଖ୍ୟାତି ଲାଭ କରିଥିଲେ ।

## ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ରାଧାକୃଷ୍ଣନ୍

ଡକ୍ଟର ରାଧାକୃଷ୍ଣନ୍ କଲିକତା ବିଶ୍ୱବିଦ୍ୟାଳୟରେ ଥିଲାବେଳେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ପଣ୍ଡିତ

ମଦନମୋହନ ମାଳବ୍ୟ ବିଶ୍ୱବିଦ୍ୟାଳୟ ପରିଚାଳନାରେ ତାଙ୍କର ସାହାଯ୍ୟ ଆବଶ୍ୟକ କରୁଥିଲେ । ତେଣୁ ତାଙ୍କୁ ସପ୍ତାହର ପାଞ୍ଚଦିନ କଲିକତାରେ ଏବଂ ଶେଷ ଦୁଇଦିନ ବନାରସରେ ରହିବାକୁ ପଡ଼ିଲା । ଏଥିପାଇଁ କଲିକତା ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ତାଙ୍କୁ ଆବଶ୍ୟକୀୟ ଅନୁମତି ପ୍ରଦାନ କରିଥିଲେ ।

କ୍ରମେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ତାଙ୍କ କାର୍ଯ୍ୟ ପରିସର ଆଶାତୀତ ଭାବରେ ବୃଦ୍ଧି ଲାଭ କରିବାରୁ ଡକ୍ଟର ରାଧାକୃଷ୍ଣନ୍ ୧୯୪୧ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ଅବ୍ୟାହତି ନେଲେ ।

କଲିକତା ବିଶ୍ୱବିଦ୍ୟାଳୟ ବିଦାୟ କାଳରେ ଡକ୍ଟର ରାଧାକୃଷ୍ଣନ୍‌ଙ୍କୁ ଏଲ୍. ଏଲ୍. ଡି. ଉପାଧିରେ ଭୂଷିତ କରିଥିଲେ ଓ ବିଶ୍ୱବିଦ୍ୟାଳୟର ସମ୍ମାନିତ ସଭ୍ୟ ଭାବରେ ଗ୍ରହଣ କରିଥିଲେ ।

ପ୍ରସଙ୍ଗ କ୍ରମେ ଉଲ୍ଲେଖ କରାଯାଇପାରେ ଯେ, ପଣ୍ଡିତ ମଦନମୋହନ ମାଳବ୍ୟ ଭିକ୍ଷା କରି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ହିନ୍ଦୁ ଶିକ୍ଷା ଓ ସଂସ୍କୃତିର ପୁନରୁତ୍‌ଥାନ ଥିଲା ଏହି ବିଶ୍ୱବିଦ୍ୟାଳୟର ଚରମ ଓ ପରମ ଲକ୍ଷ୍ୟ । ମାତ୍ର ଏହି ଲକ୍ଷ୍ୟ ପୂରଣ ପୂର୍ବରୁ ମାଳବ୍ୟଙ୍କର ସ୍ୱାସ୍ଥ୍ୟହାନି ଘଟିଲା । ମହାତ୍ମାଗାନ୍ଧୀଙ୍କ ପରାମର୍ଶ କ୍ରମେ ପଣ୍ଡିତ ମାଳବ୍ୟ ତାଙ୍କର ପ୍ରିୟ ଅନୁଷ୍ଠାନକୁ ପ୍ରଫେସର ରାଧାକୃଷ୍ଣନ୍‌ଙ୍କ ହାତରେ ଅର୍ପଣ କରିଦେବାକୁ ମନସ୍ଥ କଲେ । ସେ ରୁଗ୍‌ଣ ଅବସ୍ଥାରେ କଲିକତା ଯାତ୍ରା କଲେ ଓ ରାଧାକୃଷ୍ଣନ୍‌ଙ୍କ ପକ୍ଷରେ ପଣ୍ଡିତ ମାଳବ୍ୟଙ୍କ ଅନୁରୋଧ ଏଡ଼ାଇବାର ସହଜ ନ ଥିଲା । ସେ ହିନ୍ଦୁ ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ଗ୍ରହଣ କଲେ ।

ସେତେବେଳେ ହିନ୍ଦୁ ବିଶ୍ୱବିଦ୍ୟାଳୟର ଅବସ୍ଥା ଅତି ଶୋଚନୀୟ ଥିଲା । ଯୁକ୍ତପ୍ରଦେଶ ସରକାର ହିନ୍ଦୁ ବିଶ୍ୱବିଦ୍ୟାଳୟକୁ ଯେଉଁ ଅର୍ଥ ସାହାଯ୍ୟ କରୁଥିଲେ ତାହା ସମୁଦ୍ରକୁ ଶଙ୍ଖେ ପାଣି ସଦୃଶ ଥିଲା । ଛାତ୍ର ଓ ଅଧ୍ୟାପକମାନେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାକୁ ବ୍ୟାକୁଳ ଥିଲେ ।

ସାହସୀ ରାଧାକୃଷ୍ଣନ୍ ଅତି ଧୈର୍ଯ୍ୟ ସହକାରେ ବିଷମ ସଙ୍କଟରୁ ବିଶ୍ୱବିଦ୍ୟାଳୟକୁ ରକ୍ଷା କରିବା ପାଇଁ ବଦ୍ଧପରିକର ହେଲେ । ସେ ତତ୍କାଳୀନ ଭାରତର ବଡ଼ଲାଟ ଲର୍ଡ଼ ଲିନ୍‌ଲିଥ୍‌ଗୋଙ୍କୁ ସାକ୍ଷାତ୍ କରି ବିଶ୍ୱବିଦ୍ୟାଳୟ ସମ୍ପର୍କରେ ଏପରି ଏକ ବିବରଣୀ ଉପସ୍ଥାପନ କଲେ ଯଦ୍ଦ୍ୱାରା ବଡ଼ଲାଟ ସନ୍ତୁଷ୍ଟ ହେଲେ ଓ ହିନ୍ଦୁ ବିଶ୍ୱବିଦ୍ୟାଳୟକୁ ଆର୍ଥିକ ସାହାଯ୍ୟର ବ୍ୟବସ୍ଥା କଲେ ।

## ଆନ୍ଧ୍ର ବିଶ୍ୱବିଦ୍ୟାଳୟର ଉପକୁଳପତି

ଏହି ପୂର୍ବରୁ ଡକ୍ଟର ରାଧାକୃଷ୍ଣନ୍ ୧୯୩୧ ମସିହାରେ ନବପ୍ରତିଷ୍ଠିତ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ପଦ ଗ୍ରହଣ କରିଥିଲେ ଓ ଅତ୍ୟନ୍ତ ପାରଦର୍ଶିତା ସହକାରେ ନିଜ କର୍ତ୍ତବ୍ୟ ସମ୍ପାଦନ କରିଥିଲେ ।

ପ୍ରସଙ୍ଗ କ୍ରମେ ଉଲ୍ଲେଖ କରାଯାଇପାରେ ଯେ ୧୯୨୬ ମସିହାରେ ଶ୍ରୀ ସି. ଆର. ରେଡ୍ଡି ଆନ୍ଧ୍ର ବିଶ୍ୱବିଦ୍ୟାଳୟର ପ୍ରାଣ ପ୍ରତିଷ୍ଠା କରିଥିଲେ । ସେ ମନସ୍ଥ କରିଥିଲେ ଯେ, ଏହା କେବଳ ପରୀକ୍ଷାକାରୀ ବା ମଞ୍ଜୁରୀ ପ୍ରଦାନକାରୀ ସଂସ୍ଥା ନହୋଇ ଏକ ଶିକ୍ଷା ପ୍ରଦାନକାରୀ ସଂସ୍ଥା ହେବ । ରାଜନୈତିକ କାରଣରୁ ପ୍ରତିଷ୍ଠାତାଙ୍କୁ ଏଥିରୁ ବିଦାୟ ନେବାକୁ ପଡ଼ିଲା ।

ଏହାପରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ଅଧିକାଂଶ ସିନେଟ ସଦସ୍ୟ ରାଧାକୃଷ୍ଣନ୍‌ଙ୍କୁ କୁଳପତି ରୂପେ ନିର୍ବାଚିତ କଲେ । ରାଧାକୃଷ୍ଣନ୍ ଏହି ସଦସ୍ୟମାନଙ୍କ ମତକୁ ସମ୍ମାନ ପ୍ରଦର୍ଶନ କରି, କଲିକତା ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗ ଛାଡ଼ି, ଆନ୍ଧ୍ର ବିଶ୍ୱ-ବିଦ୍ୟାଳୟରେ କୁଳପତି ରୂପେ ଯୋଗ ଦେଲେ ।

ଡଃ. ରାଧ କୃଷ୍ଣନ୍ ଆନ୍ଧ୍ର ବିଶ୍ୱବିଦ୍ୟାଳୟରେ ଯେତେବେଳେ ଯୋଗ ଦେଲେ, ସେତେବେଳେ ବିଶ୍ୱବିଦ୍ୟାଳୟର ନିଜସ୍ୱ ଗୃହ ନ ଥିଲି କି ଗବେଷଣାଗାର ଓ ପୁସ୍ତକାଗାର ନଥିଲା । ସେ ନିଜର ଉପସ୍ଥିତ ବୁଦ୍ଧି ପ୍ରୟୋଗ କରି ପ୍ରଥମେ ଇତିହାସ, ଅର୍ଥନୀତି ଓ ତେଲୁଗୁ ପ୍ରଭୃତି ବିଭାଗ ଖୋଲିଲେ ଓ ପ୍ରତିଷ୍ଠାତା ସି. ଆର. ରେଡ଼ିଙ୍କ ଇଚ୍ଛା ପୂରଣ ପୂର୍ବକ ବିଶ୍ୱବିଦ୍ୟାଳୟକୁ ଶିକ୍ଷାଦାନକାରୀ ସଂସ୍ଥାରେ ପରିଣତ କଲେ । ପରେ ପରେ ଉପାଧ୍ୟୁତ୍ତର କଳା ଓ ବିଜ୍ଞାନ ବିଭାଗଗୁଡିକ ଖୋଲିଯାଇ ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ଏକ ପ୍ରସିଦ୍ଧ ଗବେଷଣା କେନ୍ଦ୍ରରେ ପରିଣତ କଲେ ।

ଏଠାରେ ଉଲ୍ଲେଖନୀୟ ଯେ, ଜୟପୁର (କୋରାପୁଟ) ମହାରାଜା ବିକ୍ରମ ଦେବ ବର୍ମା ଆନ୍ଧ୍ର ବିଶ୍ୱବିଦ୍ୟାଳୟର ବିଜ୍ଞାନ ଓ ଟେକ୍‌ନୋଲୋଜି ବିଭାଗର ଉନ୍ନତି ପାଇଁ ପ୍ରତିବର୍ଷ ଏକଲକ୍ଷ ଟଙ୍କା ଦେବାକୁ ଘୋଷଣା କରିଥିଲେ । ତେଣୁ ଏହି ବିଭାଗ-ଗୁଡ଼ିକ ବିକ୍ରମଦେବଙ୍କ ନାମରେ ନାମିତ ହୋଇଥିଲା । ମହାରାଜା ବିକ୍ରମଦେବ ଶେଷ ଜୀବନ ପର୍ଯ୍ୟନ୍ତ ତାଙ୍କ ପ୍ରତିଶ୍ରୁତି ପାଳନ କରିଥିଲେ ।

## ଆଦର୍ଶ କୁଳପତି

ଡକ୍ଟର ରାଧାକୃଷ୍ଣନ୍ ଥିଲେ ଆଦର୍ଶ କୁଳପତି । ଛାତ୍ର ଓ ଅଧ୍ୟାପକମାନଙ୍କ ପ୍ରତି ତାଙ୍କ ହୃଦୟରେ ପ୍ରଚୁର ସହାନୁଭୂତି ଥିଲା ।

ଛାତ୍ର ଓ ଅଧ୍ୟାପକମାନେ ତାଙ୍କୁ ଯେ କୌଣସି ସମୟରେ ଦେଖାକରି ପାରୁଥିଲେ । ସେ ସବୁ ସମୟରେ ଛାତ୍ର ଓ ଅଧ୍ୟାପକମାନଙ୍କ ସୁବିଧା ଅସୁବିଧା କଥା ଶୁଣିବାକୁ ପ୍ରସ୍ତୁତ ଥିଲେ ।

ଡଃ. ରାଧାକୃଷ୍ଣନ୍‌ଙ୍କ ହୃଦୟ ନବନୀ ପରି କୋମଳ ହେଲେ ହେଁ ତାର ଶକ୍ତି ବଜ୍ର ଅପେକ୍ଷା କଠିନ ଥିଲା । ବିଶ୍ୱବିଦ୍ୟାଳୟର ପ୍ରତ୍ୟେକ ଅସୁବିଧା ଦୂର କରିବା ପାଇଁ ସେ କଠୋର ବ୍ୟବସ୍ଥା ଗ୍ରହଣ କରୁଥିଲେ ।

ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ କୁଳପତି ଥିବାବେଳେ ସେ ଦେଖିଲେ ଯେ, ହିନ୍ଦୀ ଅଧ୍ୟାପକମାନେ ଇଂରାଜୀ ଅଧ୍ୟାପକମାନଙ୍କ ଠାରୁ ଅଧିକ ଦରମା ପାଉଛନ୍ତି । ସେ ଏହାକୁ ସମତୁଲ କଲେ ।

ସହଯୋଗୀ ଅଧ୍ୟାପକମାନଙ୍କଠାରେ ତାଙ୍କର ଅଟଳ ବିଶ୍ୱାସ ଥିଲା । କିନ୍ତୁ ସେମାନଙ୍କ ମଧ୍ୟରୁ କେହି ନିଜ କର୍ତ୍ତବ୍ୟରେ ଖିଲାପ୍ କରୁଥିବା ଦେଖିଲେ ସେ ଖୁବ୍ କଠୋର ନୀତି ପ୍ରୟୋଗ କରୁଥିଲେ ।

ଅଧସ୍ତନ କର୍ମଚାରୀମାନେ କୌଣସି ଅସୁବିଧାର ସମ୍ମୁଖୀନ ହେଲେ ସେ ଆଶାତୀତ ସାହାଯ୍ୟ ପ୍ରଦାନ କରି ସେମାନଙ୍କ ଅସୁବିଧା ଦୂର କରୁଥିଲେ ।

ବିଶ୍ୱବିଦ୍ୟାଳୟର ଛାତ୍ର, ଅଧ୍ୟାପକ ଓ କର୍ମଚାରୀମାନେ ଡଃ. ରାଧାକୃଷ୍ଣନ୍‌ଙ୍କ ବ୍ୟକ୍ତିଗତ ପ୍ରଭାବରେ ପ୍ରଭାବିତ ହେଉଥିଲେ । ତେଣୁ ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରୁ ସେ ଅନୁପସ୍ଥିତ ରହିଲେ ମଧ୍ୟ, ପରିସର ମଧ୍ୟରେ ଶାନ୍ତି ଶୃଙ୍ଖଳା ଅବ୍ୟାହତ ରହୁଥିଲା ।

କେବଳ ସେତିକି ନୁହେଁ, ଡଃ. ରାଧାକୃଷ୍ଣନ୍ ଜଣେ ସୁଦକ୍ଷ ପ୍ରଶାସକ ଥିଲେ । ସେ ବିଶ୍ୱବିଦ୍ୟାଳୟରେ ବିଭାଗୀୟ ମୁଖ୍ୟମାନଙ୍କ

କ୍ଷମତା ଉପରେ କଦାପି ହସ୍ତକ୍ଷେପ କରୁ ନଥିଲେ । ଏ କ୍ଷେତ୍ରରେ ସାର୍ ଆଶୁତୋଷ ମୁଖାର୍ଜୀ ତାଙ୍କର ଆଦର୍ଶ ଥିଲେ ।

ଏହି କାରଣରୁ ସେ ଏକାଧିକ ବିଶ୍ୱବିଦ୍ୟାଳୟକୁ ନିଜ ଦାୟିତ୍ୱରେ ସୁଚାରୁରୂପେ ପରିଚାଳିତ କରିପାରିଥିଲେ ।

## ବିଭିନ୍ନ ଦାୟିତ୍ୱରେ ଡକ୍ଟର ରାଧାକୃଷ୍ଣନ୍

ରାଧାକୃଷ୍ଣନ୍ ସର୍ବପ୍ରଥମେ ଅଧ୍ୟାପକ ଭାବରେ ନିଯୁକ୍ତିଲାଭ କରିଥିଲେ । ତା'ପରେ ସେ ବିଭାଗୀୟ ମୁଖ୍ୟ ପ୍ରଫେସର୍ ଓ ବିଶ୍ୱ ବିଦ୍ୟାଳୟ ପରିଚାଳନା କମିଟି, ଅଧ୍ୟାପକ ନିର୍ବାଚନ କମିଟି ପ୍ରଭୃତିରେ ରହି ନିଜ କର୍ତ୍ତବ୍ୟ ସୁଚାରୁ ରୂପେ ସମ୍ପାଦନ କଲେ ।

ଛୁଟିଅବସରରେ ଦେଶ ବିଦେଶକୁ ଯାଇ ଭାରତୀୟ ଧର୍ମ, ଦର୍ଶନ ଓ ସଂସ୍କୃତି ଉପରେ ତାଙ୍କୁ ଅଭିଭାଷଣମାନ ଦେବାକୁ ପଡ଼ିଲା । ସେ ଇଂଲଣ୍ଡର ଭିଜିଟିଂ ପ୍ରଫେସର ଭାବରେ ମଧ୍ୟ କାର୍ଯ୍ୟ କରିଥିଲେ । ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ସେ ଥିଲେ ପ୍ରଥମ ଭାରତୀୟ ଅଧ୍ୟାପକ ।

ମହୀଶୂର ବିଶ୍ୱବିଦ୍ୟାଳୟ, କଲିକତା ବିଶ୍ୱବିଦ୍ୟାଳୟ, ଆନ୍ଧ୍ର ବିଶ୍ୱବିଦ୍ୟାଳୟର ଗୁରୁତ୍ୱପୂର୍ଣ୍ଣ ପଦବୀରେ ଅଧିଷ୍ଠିତ ହେବାପରେ ୧୯୩୯ରୁ ୧୯୪୮ ମସିହା ପର୍ଯ୍ୟନ୍ତ ତାଙ୍କୁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଉପକୁଳପତି ଦାୟିତ୍ୱ ସମ୍ଭାଳିବାକୁ ପଡ଼ିଥିଲା । ପରେ ସେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର କୁଳପତି ପଦରେ ଅଧିଷ୍ଠିତ ହୋଇଥିଲେ ।

୧୯୪୮ ମସିହାରେ ସେ ବିଶ୍ୱବିଦ୍ୟାଳୟ କମିଶନ୍‌ର ସଭାପତି ପଦ ମଣ୍ଡନ କରିଥିଲେ ।

୧୯୪୦ ମସିହା ଠାରୁ ୧୯୫୦ ମସିହା ପର୍ଯ୍ୟନ୍ତ ପନ୍ଦର ପାଞ୍ଚବର୍ଷ କାଳ ସେ ଜାତିଙ୍କର ଶିକ୍ଷା, ବିଜ୍ଞାନ ଓ ସଂସ୍କୃତି ସଙ୍ଗଠନକୁ ଯାଉଥିବା ଭାରତୀୟ ପ୍ରତିନିଧି ଦଳର ନେତୃତ୍ୱ ଗ୍ରହଣ କରିଥିଲେ ଏବଂ ୧୯୪୮ ମସିହାରେ ସେ ଭାରତ ପରିଚାଳନା ବୋର୍ଡ଼ର ସଭାପତି ନିର୍ବାଚିତ ହୋଇଥିଲେ ।

## ରୁଷ୍ ଦେଶର ରାଷ୍ଟ୍ରଦୂତ

ସାଧାରଣତଃ ରାଜନୈତିକ ବ୍ୟକ୍ତିମାନଙ୍କୁ ବିଭିନ୍ନ ଦେଶକୁ ରାଷ୍ଟ୍ରଦୂତ ଭାବରେ ନିଯୁକ୍ତ କରାଯାଇଥାଏ । ଦେଶର ସାଧାରଣ ସମାଜରୁ ଏପରି ଲୋକଙ୍କୁ ବଛାଯାଏ ନାହିଁ । ପୁଣି ଏ ପଦବୀ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଦୁଇ ଦେଶର ସମ୍ପର୍କ ରାଷ୍ଟ୍ରଦୂତଙ୍କ କାର୍ଯ୍ୟକଳାପ ଉପରେ ନିର୍ଭର କରିଥାଏ ।

ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ରୁଷ୍ ଦେଶର ରାଷ୍ଟ୍ରଦୂତରୂପେ ଯେତେବେଳେ ଦାର୍ଶନିକ ଡକ୍ଟର ରାଧାକୃଷ୍ଣନ୍‌ଙ୍କୁ ବାଛିଲେ, ସେତେବେଳେ ରାଜନୈତିକ କ୍ଷେତ୍ରରେ ହଇଚଇ ସୃଷ୍ଟି ହେଲା ।

କିନ୍ତୁ ଭାରତର ଶିଷ୍ଟ, ଶାନ୍ତିକାମୀ ଜନତା ରାଧାକୃଷ୍ଣନ୍‌ଙ୍କୁ ରୁଷ୍ ଦେଶର ରାଷ୍ଟ୍ରଦୂତ ରୂପେ ବଛା ଯାଇଥିବା ଶୁଣି ଆଶ୍ୱସ୍ତ ହେଲେ । ପଣ୍ଡିତମାନେ କହିଲେ, ରାଧାକୃଷ୍ଣନ୍ ରାଷ୍ଟ୍ରଦୂତ ହେଲେ ଭାରତର ଗୌରବ, ସମ୍ମାନ ବୃଦ୍ଧି ଲାଭ କରିବ ।

ବର୍ତ୍ତମାନ ରୁଷ୍ ଓ ଭାରତ ମଧ୍ୟରେ ପ୍ରଗାଢ଼ ବନ୍ଧୁତା ରହିଛି । କିନ୍ତୁ ସେତେବେଳେ ପରିସ୍ଥିତି ଭିନ୍ନ ଥିଲା । ରୁଷ୍ ଦେଶର ସର୍ବମୟ କର୍ତ୍ତା ଥିଲେ ଷ୍ଟାଲିନ୍ । ରୁଷ୍ ଦେଶର ଲୋକେ ଭାବୁଥିଲେ, ଭାରତ ବ୍ରିଟିଶ୍ ରାଜ୍ୟଗୋଷ୍ଠୀର ସଦସ୍ୟ ପଦ ମଣ୍ଡନ କରିଥିବାରୁ ସେ

ପାଣ୍ଡିତ୍ୟ ପୂର୍ଣ୍ଣ ଚାଙ୍ଗ ବକ୍ତୃତାମାନଙ୍କର ଗୋଡାଣିଆ ହୋଇ ରହିବ । ରୁଷ୍ ଦେଶର ପତ୍ର ପତ୍ରିକାମାନେ ଭାରତ ବିରୁଦ୍ଧରେ ବିଷ ଉଦ୍‌ଗୀରଣ କରୁଥିଲେ ।

ଡକ୍ଟର ରାଧାକୃଷ୍ଣନ୍ ରୁଷ୍ ଦେଶର ରାଷ୍ଟ୍ରଦୂତ ରୂପେ ବଛା ଯାଇଥିବା ଦେଖି ରାଜନୈତିକ ନେତାମାନେ ବିପଦ ଗଣିଲେ ଓ ନେହେରୁଙ୍କ ଉପରେ ବିଭିନ୍ନ ଚାପ ପକାଇଲେ ।

କିନ୍ତୁ ନେହେରୁ ନିଜ ସିଦ୍ଧାନ୍ତରେ ଅଟଳ ରହିଲେ । ଡକ୍ଟର ରାଧାକୃଷ୍ଣନ୍ ସର୍ତ୍ତ ରଖିଲେ, ଯଦି ତାଙ୍କୁ ରାଷ୍ଟ୍ରଦୂତ କରାଯାଏ ତାହାହେଲେ ସେ ଯେଉଁ ପଦବୀ ସମ୍ଭାଳିବେ ମାତ୍ର ପୂର୍ବରୁ ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ 'ତୁଳନାତ୍ମକ ଧର୍ମ' ବିଷୟରେ ଯେପରି ପ୍ରଫେସର ଥିଲେ, ରାଷ୍ଟ୍ରଦୂତ ହେବାପରେ ମଧ୍ୟ ସେହିପରି ରହିବାକୁ ତାଙ୍କୁ ଅନୁମତି ମିଳିବ ।

ରାଧାକୃଷ୍ଣନ୍‌ଙ୍କ ଅସାଧାରଣ ବ୍ୟକ୍ତିତ୍ୱ ଯୋଗୁ ଭାରତ ସରକାର ତାଙ୍କ ସର୍ତ୍ତରେ ରାଜି ହେଲେ ।

ରାଧାକୃଷ୍ଣନ୍ ରାଷ୍ଟ୍ରଦୂତ ରୂପେ ରୁଷ୍ ଦେଶ ଯାତ୍ରା କଲେ ଓ ସେଠାରେ ଅଧ୍ୟୟନ କାର୍ଯ୍ୟରେ ଲିପ୍ତ ରହିଲେ । ଭିନ୍ନ ଭିନ୍ନ ସଭାସମିତିରେ ଅଭିଭାଷଣ ଦେଇ ନିଜ ପାଣ୍ଡିତ୍ୟର ପରିଚୟ ଦେଲେ । ସେ ଅନ୍ୟ ଦେଶର ରାଷ୍ଟ୍ରଦୂତମାନଙ୍କ ପରି ଆମୋଦ-ପ୍ରମୋଦରେ ସମୟ ନଷ୍ଟ କରିବାକୁ ଚାହୁଁ ନଥିଲେ ।

ଦୂତାବାସରେ ଅବସ୍ଥାନ କାଳରେ ସେ ଉପନିଷଦର ଇଂରାଜୀ ଅନୁବାଦ କଲେ ଓ ରୁଷ-ଭାରତ ସମ୍ପର୍କ କିପରି ସୁଦୃଢ଼ ହେବ ସେ ବିଷୟରେ ଗଭୀର ଚିନ୍ତା କରୁଥିଲେ ।

ଇତିମଧ୍ୟରେ ବହୁଦିନ ବିତିଗଲା ପରେ ଡଃ. ରାଧାକୃଷ୍ଣନ୍ ରୁଷ୍ ଦେଶର ହର୍ତ୍ତାକର୍ତ୍ତା ବିଧାତା ଲୌହମାନବ ଷ୍ଟାଲିନ୍‌ଙ୍କ

ସଙ୍ଗରେ ଭେଟ ହୋଇ ନଥିଲା । ଅବଶେଷରେ ୧୯୪୯ ମସିହା ଜାନୁଆରୀ ୧୪ ତାରିଖ ଧନ ରାତ୍ରି ନ'ଟାବେଳେ ଷ୍ଟାଲିନ୍‌ଙ୍କ ସଙ୍ଗରେ ସାକ୍ଷାତ କରିବାକୁ ତାଙ୍କୁ ଟେଲିଫୋନ ଜରିଆରେ ଜଣାଇ ଦିଆଗଲା ।

ସେଦିନ ରାତ୍ରି ନ'ଟାରେ ଲୌହମାନବ ଷ୍ଟାଲିନ୍‌ଙ୍କ ସହିତ ଦାର୍ଶନିକ ରାଷ୍ଟ୍ରଦୂତ ରାଧାକୃଷ୍ଣନ୍‌ଙ୍କ ଭେଟ ହେଲା ଓ କଥାବାର୍ତ୍ତା ଛଳରେ ସେ ଲୌହମାନବ ଷ୍ଟାଲିନ୍‌ଙ୍କ ମଣିଷ ସୁଲଭ ହୃଦୟକୁ ଜୟ କରି ନେଇଥିଲେ । ୧୯୫୨ ମସିହା ଅପ୍ରେଲ ମାସ ୬ ତାରିଖ ଦିନ ରୁଷ୍ ଦେଶରେ ତାଙ୍କ କାର୍ଯ୍ୟକାଳ ସରିଗଲା । ପୂର୍ବଦିନ ଅର୍ଥାତ୍ ୫ ତାରିଖ ଦିନ ଷ୍ଟାଲିନ୍ ତାଙ୍କୁ ଦେଖା କରିବାକୁ ଡକାଇଲେ ।

ଡକ୍ଟର ରାଧାକୃଷ୍ଣନ୍ ଷ୍ଟାଲିନ୍‌ଙ୍କୁ ଦେଖା କରିବାକୁ ଯାଇ ଦେଖିଲେ, ସେ ଅସୁସ୍ଥ ଅଛନ୍ତି । ରାଧାକୃଷ୍ଣନ୍ ଷ୍ଟାଲିନ୍‌ଙ୍କ ମସ୍ତକ ଓ ପୃଷ୍ଠଦେଶରେ ତାଙ୍କର ସ୍ନେହ ଓ ମମତାଭରା ହାତ ବୁଲାଇ ଆଣିଲେ । ଷ୍ଟାଲିନ୍ କରୁଣ କଣ୍ଠରେ କହିଲେ, 'ଆପଣ ପ୍ରଥମ ଥର ପାଇଁ ମୋତେ ମନୁଷ୍ୟ ପରି ବ୍ୟବହାର ଦେଖାଇଲେ, ରାକ୍ଷସ ପରି ନୁହେଁ । ତାପରେ କିଛିକ୍ଷଣ ନୀରବ ରହି ପ୍ରକାଶ କଲେ, ଆପଣ ଆମ୍ଭମାନଙ୍କୁ ଛାଡ଼ି ଯାଉଥିବାରୁ ମୁଁ ଦୁଃଖିତ । ଆପଣ ଦୀର୍ଘଜୀବୀ ହୁଅନ୍ତୁ । ମୁଁ କିନ୍ତୁ ଆଉ ବେଶୀଦିନ ବଞ୍ଚିନାହିଁ ।

## ଭାରତର ଉପରାଷ୍ଟ୍ରପତି

ରୁଷ୍ ଦେଶରୁ ଫେରି ଆସିବା ପରେ ଡକ୍ଟର ରାଧାକୃଷ୍ଣନ୍ ଭାରତର ଉପରାଷ୍ଟ୍ରପତି ରୂପେ ଅଧିଷ୍ଠିତ ହେଲେ ।

ଭାରତର ଉପରାଷ୍ଟ୍ରପତି ରାଜ୍ୟସଭାର ଅଧ୍ୟକ୍ଷତା କରିଥାନ୍ତି । ପଣ୍ଡିତ ନେହେରୁ ଦାର୍ଶନିକ ରାଧାକୃଷ୍ଣନ୍‌ଙ୍କୁ ଉପରାଷ୍ଟ୍ରପତି ରୂପେ

ସାକ୍ଷୀ ବେଖି ପୁନର୍ବାର ସଦସ୍ୟମାନେ ଡାଙ୍କ ମହଲରେ ଗୁଞ୍ଜରଣ ସୃଷ୍ଟି ହେଲା । କିନ୍ତୁ ପଣ୍ଡିତ ନେହେରୁ ନିଜ ସିଦ୍ଧାନ୍ତରେ ଅଟଳ ରହିଲେ ।

ଡଃ. ରାଧାକୃଷ୍ଣନ୍ ଉପରାଷ୍ଟ୍ରପତି ପଦରେ ରହି ଯେଉଁ ସବୁ କାର୍ଯ୍ୟ କଲେ, ତଦ୍ଦ୍ୱାରା ଉକ୍ତ ପଦବୀର ମର୍ଯ୍ୟାଦା ବୃଦ୍ଧି ପାଇଲା । ସେ କେବେହେଲେ ରାଜ୍ୟସଭାର ମାନ୍ତି ନିୟମ ଲଙ୍ଘନ କରିନଥିଲେ । ସେ ଧୈର୍ଯ୍ୟ ସହକାରେ ଏ ସଭାର ଦୈନନ୍ଦିନ କାର୍ଯ୍ୟ ନିର୍ବାହ କରୁଥିଲେ । ସମ୍ବିଧାନର ବିଭିନ୍ନ ଧାରାକୁ ସେ ଆୟତ୍ତ କରି ନେଇଥିଲେ ଓ ଆବଶ୍ୟକ ସ୍ଥଳେ ଏପରି ପ୍ରାଞ୍ଜଳଭାବରେ ବ୍ୟାଖ୍ୟା କରୁଥିଲେ ଯେ, ରାଜ୍ୟସଭାର ସଦସ୍ୟମାନେ ବାଧ ହୋଇ ଚୁପ ଚୁପେ ସେସବୁ ମନଯୋଗ ସହକାରେ ଶୁଣୁଥିଲେ ।

ଉପରାଷ୍ଟ୍ରପତି ତଥା ରାଜ୍ୟସଭାର ଅଧ୍ୟକ୍ଷ ହିସାବରେ ସେ ସରକାରୀ ଓ ବିରୋଧୀ ଦଳର ସମସ୍ତ ସଭ୍ୟଙ୍କର ଶ୍ରଦ୍ଧା ଓ ଭକ୍ତି-ଭାଜନ ହୋଇ ପାରିଥିଲେ । ତାଙ୍କ ନିଷ୍ପତ୍ତିରେ କେହି କେବେ କ୍ଷୁର୍ଣ୍ଣ ହୋଇ ନଥିଲେ ।

ସୁଦୀର୍ଘ ଦଶବର୍ଷ କାଳ ସେ ଭାରତର ଉପରାଷ୍ଟ୍ରପତି ପଦରେ ଅଧିଷ୍ଠିତ ଥିଲେ ।

୧୯୫୩ ମସିହାରେ ସେ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କର ପରାମର୍ଶମତେ ବ୍ୟାଖ୍ୟାନ ଦେବା ନିମନ୍ତେ ଆମେରିକା ଗସ୍ତ କରିଥିଲେ । ଆମେରିକାର ବିଭିନ୍ନ ସ୍ଥାନରେ ସେ ଭୂମଣ୍ଡଳୀୟ ଗଣତନ୍ତ୍ର ଓ ଆଧୁନିକ ସଭ୍ୟତାର ଭବିଷ୍ୟତ ସମ୍ପର୍କରେ ଭାଷଣ ଦେଇ ଚିନ୍ତାଶୀଳ ଆମେରିକାବାସୀଙ୍କ ମନରେ ଆଲୋଡ଼ନ ସୃଷ୍ଟି କରି ପାରିଥିଲେ । ଏହି ସମୟରେ ସେ ବିଭିନ୍ନ ଦେଶରେ ଭାରତୀୟ ଚିନ୍ତାଧାରା ଓ ସଂସ୍କୃତିର ପ୍ରଚାର କରିବା ଦ୍ୱାରା ଆମ ଦେଶର ସମ୍ମାନ ବୃଦ୍ଧି ଘଟିଲା ।

ଭାରତର ଉପରାଷ୍ଟ୍ରପତି ପଦରେ ଅଧିଷ୍ଠିତ ଥିଲାବେଳେ ସେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ମଧ୍ୟ ବହନ କରିଥିଲେ ।

ତତ୍କାଳୀନ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କ ମନେମ୍ନା ଯାହାକଜନିତ ଅନୁପସ୍ଥିତିରେ ଓ ଅସୁସ୍ଥତା ସମୟରେ ଡକ୍ଟର ରାଧାକୃଷ୍ଣନ୍ ରାଷ୍ଟ୍ରପତି ଦାୟିତ୍ୱ ମଧ୍ୟ ନିର୍ବାହ କରିଥିଲେ ।

## ରାଷ୍ଟ୍ରପତି ପଦରେ ଡକ୍ଟର ରାଧାକୃଷ୍ଣନ୍

୧୯୬୨ ମସିହାରେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଭାରତର ରାଷ୍ଟ୍ରପତି ପଦରୁ ଅବସର ଗ୍ରହଣ କରିବା ପରେ ଡଃ. ରାଧାକୃଷ୍ଣନ୍ ଭାରତର ଏହି ସର୍ବୋଚ୍ଚ ପଦବୀରେ ଅଧିଷ୍ଠିତ ହେଲେ ।

ଏହିପରି ଭାବରେ ଭାରତ ଜଣେ ସୁପ୍ରସିଦ୍ଧ ଦାର୍ଶନିକ, ପଣ୍ଡିତ ଓ ଶିକ୍ଷକଙ୍କୁ ରାଷ୍ଟ୍ରପତି ଲାଭ କଲା ।

ରାଧାକୃଷ୍ଣନ୍‌ଙ୍କ ପ୍ରତିଭା ଏତେ ପ୍ରାଞ୍ଜଳ ଥିଲା ଯେ, ମହାମାନବ ମହାତ୍ମା ଗାନ୍ଧୀ ମଧ୍ୟ ବେଳେବେଳେ ତାଙ୍କ ଯୁକ୍ତିରେ ପରାସ୍ତ ହୋଇ ଯାଉଥିଲେ ।

ରାଷ୍ଟ୍ରପତି ପଦ ରାଧାକୃଷ୍ଣନ୍‌ଙ୍କ ଗୌରବ ବୃଦ୍ଧି ନକରି ଭାରତବାସୀଙ୍କର ହିଁ ଗୌରବ ବୃଦ୍ଧି କରିଥିଲା । କାରଣ ରାଷ୍ଟ୍ରପତି ହେବା ପୂର୍ବରୁ ସେ ସମଗ୍ର ବିଶ୍ୱରେ ଖ୍ୟାତି ଅର୍ଜନ କରି ସାରିଥିଲେ । ସେ ଯେତେବେଳେ ରାଷ୍ଟ୍ରପତି ଭାବରେ ନିର୍ବାଚିତ ହେଲେ ସେତେବେଳେ ଭାରତବାସୀ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ସମଗ୍ର ପୃଥିବୀର ବିଜ୍ଞ ଓ ବିଚାରବନ୍ତ ବ୍ୟକ୍ତିମାନେ ଆନନ୍ଦ ପ୍ରକାଶ କରି ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ ।

ଭାରତର ରାଷ୍ଟ୍ରପତି ପଦ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ତାଙ୍କ ନାମରେ ଶାସନ ଚାଲେ । କୌଣସି ପ୍ରଦେଶର ବିଶୃଙ୍ଖଳା ଦେଖା

ଦେଲେ, ରାଷ୍ଟ୍ରପତି ସାମ୍ବିଧାନିକ କ୍ଷମତା ପ୍ରୟୋଗ କରି ସମ୍ପୃକ୍ତ ରାଜ୍ୟର ଶାସନଭାର ନିଜ ହାତକୁ ନେଇଥାନ୍ତି । ଆବଶ୍ୟକ ସ୍ଥଳେ ସେ କେନ୍ଦ୍ର ମନ୍ତ୍ରୀମଣ୍ଡଳକୁ ପରାମର୍ଶ ଦେଇଥାନ୍ତି । ଏପରିସ୍ଥଳେ ଜଣେ ଉପଯୁକ୍ତ ବ୍ୟକ୍ତି ରାଷ୍ଟ୍ରପତି ପଦରେ ଅଧିଷ୍ଠିତ ନଥିଲେ, ମହା ବିଶୃଙ୍ଖଳା ହେବାର ସମ୍ଭାବନା ରହିଛି । ଏସବୁ ଦୃଷ୍ଟିରୁ ରାଷ୍ଟ୍ରପତି ଭାବରେ ରାଧାକୃଷ୍ଣନ ନିର୍ବାଚିତ ହେବା ଦେଶ ଓ ଦେଶବାସୀଙ୍କ ପକ୍ଷରେ ମଙ୍ଗଳପ୍ରଦ ଥିଲା ।

ଏତେବଡ଼ ପଦବୀରେ ଆସୀନ ହୋଇଥିଲେ ହେଁ ଉକ୍ତର ରାଧାକୃଷ୍ଣନ୍‌ଙ୍କ ମନରେ କେବେହେଲେ ଗର୍ବଭାବ ପ୍ରକାଶ ପାଇ ନଥିଲା । ସେ ଘୋଷଣା କରିଥିଲେ ଯେ, କୌଣସି ସମୟରେ ଯେ କୌଣସି ବ୍ୟକ୍ତି ତାଙ୍କୁ ସାକ୍ଷାତ କରି ପାରିବ ।

ଅନ୍ୟ ଦେଶମାନଙ୍କ ସହିତ ମିତ୍ରତା ରକ୍ଷା ଉଦ୍ଦେଶ୍ୟରେ ରାଷ୍ଟ୍ରପତି ରାଧାକୃଷ୍ଣନ ବିଦେଶ ଯାତ୍ରା କରିଥିଲେ । ସେ ଇରାକ୍, ଆଫଗାନିସ୍ଥାନ ଓ ଇଂଲଣ୍ଡ ଗସ୍ତ କରି ସାରି ଯୁକ୍ତରାଷ୍ଟ୍ର ଆମେରିକାରେ ପହଞ୍ଚିଲେ । ସେତେବେଳେ ଆମେରିକାର ରାଷ୍ଟ୍ରପତି ଥାଆନ୍ତି ଗୁଣଗ୍ରାହୀ, ମାନବବାଦୀ ଜନ୍ କେନେଡି । ତାଙ୍କର ମନୋଭାବ ସହିତ ଡଃ. ରାଧାକୃଷ୍ଣନ୍‌ଙ୍କ ମନୋଭାବର ସାମଞ୍ଜସ୍ୟ ଥିଲା । ତେଣୁ ଡଃ. ରାଧାକୃଷ୍ଣନ୍ ଆମେରିକାରେ ବିଶେଷ ଭାବରେ ସମ୍ମାନିତ ହୋଇଥିଲେ । ଆମେରିକା ରାଷ୍ଟ୍ରପତିଙ୍କ ବାସସ୍ଥାନ ହ୍ୱାଇଟ୍ ହାଉସ୍‌ର ଅତି ପାଖରେ ରାଧାକୃଷ୍ଣନ୍‌ଙ୍କ ରହିବା ପାଇଁ ବ୍ୟବସ୍ଥା କରାଯାଇଥିଲା ଓ ଜନ୍ କେନେଡିଙ୍କ ସମାନ ବ୍ୟବହାର କରିବା ପାଇଁ ତାଙ୍କୁ ଦିଆ ଯାଇଥିଲା ।

ରାଧାକୃଷ୍ଣନ୍ ଆମେରିକାବାସୀଙ୍କୁ ବୁଝାଇ ଦେଇଥିଲେ ଯେ, ଭାରତ ପୃଥିବୀର ଏକ ବୃହତ୍ତମ ଗଣତାନ୍ତ୍ରିକ ଦେଶ । ଏଠାରେ

ବିଭିନ୍ନ ଧର୍ମ ଓ ଜାତିର ଲୋକେ ବସବାସ କରୁଥିଲେ ମଧ୍ୟ, ପ୍ରତ୍ୟେକେ ନିଜ ଧର୍ମ ବିଶ୍ୱାସ ନେଇ ଚଳିବାର ସ୍ୱାଧୀନତା ଲାଭ କରିଛନ୍ତି । ଯଦି ସବଳରାଷ୍ଟ୍ର ଦୁର୍ବଳ ରାଷ୍ଟ୍ର ଉପରେ ସେମାନଙ୍କ ମତ ଲଦି ଦିଅନ୍ତି, ତେବେ ପରିସ୍ଥିତି ଅତ୍ୟନ୍ତ ଭୟାବହ ହେବ । ଏତଦ୍ଦ୍ୱାରା ଉପସ୍ଥିତ ସଭ୍ୟତା ଲୋପ ପାଇଯିବାର ସମ୍ଭାବନା ରହିଛି ।

ଆମେରିକାର ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟମାନେ ରାଧାକୃଷ୍ଣନ୍‌ଙ୍କ ବ୍ୟକ୍ତିତ୍ୱ ପାଇଁ ବହୁ ସମ୍ମାନ ସୂଚକ ଉପାଧି ପ୍ରଦାନ କରିଥିଲେ ଓ ସେ ଆନ୍ତଃରାଷ୍ଟ୍ରୀୟ ନେତା ବୋଲି ସ୍ୱୀକାର କରିଥିଲେ ।

ରାଷ୍ଟ୍ରପତି ରାଧାକୃଷ୍ଣନ୍‌ଙ୍କ ଆମେରିକା ଗସ୍ତ ଯୋଗୁ ଭାରତ ଓ ଆମେରିକା ମଧ୍ୟରେ ସୁସମ୍ପର୍କ ସ୍ଥାପିତ ହୋଇଥିଲା ।

ଆମେରିକା ଗସ୍ତପରେ ରାଷ୍ଟ୍ରପତି ରାଧାକୃଷ୍ଣନ୍ ଇଂଲଣ୍ଡ ଗସ୍ତ ଆରମ୍ଭ କରିଥିଲେ । ସେ ସେଠାରେ ମତବ୍ୟକ୍ତ କରିଥିଲେ ଯେ, ସମସ୍ତ ପୃଥିବୀ ଯୁଦ୍ଧମୁକ୍ତ ହେବା ଆବଶ୍ୟକ । ଦୁଇଟି ବିଶ୍ୱଯୁଦ୍ଧର ସମ୍ମୁଖୀନ ହୋଇ ବିପୁଳ ଜନ ଓ ଧନ କ୍ଷୟରେ ମଧ୍ୟ ଆମେ ଯଦି ଏହା ହୃଦୟଙ୍ଗମ ନକରୁ, ତାହାହେଲେ ଏହା ଆମ ପକ୍ଷରେ ପରମ ଦୁର୍ଭାଗ୍ୟ ବୋଲି ବିବେଚନା କରିବାକୁ ହେବ । ତେଣୁ ସମଗ୍ର ବିଶ୍ୱ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଆବଶ୍ୟକତା ଉପଲବ୍ଧି କରିବା ଉଚିତ । ରାଷ୍ଟ୍ରପତି ରାଧାକୃଷ୍ଣନ୍‌ଙ୍କ ଅଭିଭାଷଣମାନ ଇଂଲଣ୍ଡରେ ମଧ୍ୟ ବିଶେଷ ପ୍ରଭାବ ପକାଇ ପାରିଥିଲା ଓ ସେହି ଦେଶରେ ମଧ୍ୟ ସେ ବହୁ ସମ୍ମାନସୂଚକ ଉପାଧି ଲାଭ କରିଥିଲେ ।

ରାଷ୍ଟ୍ରପତି ରାଧାକୃଷ୍ଣନ୍ ତାଙ୍କ ଜୀବନକାଳ ମଧ୍ୟରେ ଏତେ ଉପାଧି ଲାଭ କରିଥିଲେ ଯେ, ତାହା ତାଙ୍କ ପକ୍ଷରେ ମନେ ରଖିବା କଷ୍ଟକର ହୋଇ ପଡ଼ିଥିଲା । ଏହା ଦେଖି ଜଣେ ପଣ୍ଡିତ ମନ୍ତବ୍ୟ

ଦେଇଥିଲେ, ଯଦି ରାଷ୍ଟ୍ରପତି ରାଧାକୃଷ୍ଣନ୍ ତାଙ୍କର ଉପାଧି ସବୁ କହି ପାରନ୍ତେ, ତେବେ ତାଙ୍କର ସ୍ମୃତିଶକ୍ତି ପାଇଁ ଆଉ ଗୋଟିଏ ଉପାଧି ପାଆନ୍ତେ । ଦେଶ ବିଦେଶର ବିଶ୍ୱବିଦ୍ୟାଳୟମାନେ ତାଙ୍କୁ ୪୫ ବାର ଡକ୍ଟରେଟ ଉପାଧିରେ ଭୂଷିତ କରିଥିବା ଜଣାଯାଏ ।

ଡକ୍ଟର ରାଧାକୃଷ୍ଣନ୍ ରାଷ୍ଟ୍ରପତି ଥିଲାବେଳେ ଚୀନ ଅସତର୍କ ଅବସ୍ଥାରେ ଭାରତ ଆକ୍ରମଣ କଲା । ଏହି ସମୟରେ ସେ ନିଜର ପ୍ରାଣସ୍ପର୍ଶୀ ଭାଷଣ ମାଧ୍ୟମରେ ଦେଶବାସୀଙ୍କ ମଧ୍ୟରେ ଅପୂର୍ବ ଏକତା ସୃଷ୍ଟି କରି ପାରିଥିଲେ । ସେ ଦେଶବାସୀଙ୍କୁ ନିଜ ମଧ୍ୟରେ ଥିବା ବ୍ୟକ୍ତିଗତ ମତାନ୍ତର ଓ ମନାନ୍ତର ଭୁଲି ପବିତ୍ର ମାତୃଭୂମିକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବାକୁ ଆହ୍ୱାନ ଜଣାଇଥିଲେ ।

ଆମେରିକା ଓ ଇଂଲଣ୍ଡ ଗସ୍ତ ଶେଷ କରି ରାଷ୍ଟ୍ରପତି ରାଧାକୃଷ୍ଣନ୍ ରୁଷ ଦେଶ ଭ୍ରମଣରେ ଯାଇଥିଲେ । ସେତେବେଳେ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଇହଧାମରେ ନ ଥିଲେ । ରୁଷର ତତ୍କାଳୀନ ପ୍ରଧାନମନ୍ତ୍ରୀ ନିକିତାକ୍ରୁଶ୍ଚେଭ ଓ ପ୍ରେସିଡେଣ୍ଟ ମିକୋୟାନ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ରୁଷ ଦେଶବାସୀଙ୍କୁ ସେ ଦ୍ୱିତୀୟ ମହାଯୁଦ୍ଧର ଭୟାବହତା କଥା ସ୍ମରଣ କରାଇ ଦେଇ ସତର୍କ କରି ଦେଇଥିଲେ ଯେ, ତୃତୀୟ ମହାଯୁଦ୍ଧ ଆରମ୍ଭ ହେଲେ ପୃଥିବୀର ସଭ୍ୟତା ନିଶ୍ଚିହ୍ନ ହୋଇଯିବ । ସେ ସ୍ୱର୍ଗୀୟ ଲେନିନ୍‌ଙ୍କ କଥା ସ୍ମରଣ କରାଇ ଦେଇ କହିଥିଲେ ଯେ ଯୁଦ୍ଧରେ ଅନ୍ୟମାନଙ୍କ ଅପେକ୍ଷା କୃଷକ ଓ ଶ୍ରମିକମାନେ ହିଁ ଅଧିକ ବିପନ୍ନ ହେବେ । କୃଷକ ଓ ଶ୍ରମିକମାନେ ହିଁ ଦେଶ ଓ ଜାତିର ମେରୁଦଣ୍ଡ । ତେଣୁ ଯୁଦ୍ଧଠାରୁ ସର୍ବଦା ଦୂରେଇ ରହିବା ଭଲ । ରୁଷ ଦେଶରେ ରହଣିକାଳରେ ସେ ଲେନିନ୍ ଗ୍ରାଡ୍, ଆରମୋନିୟା ପ୍ରଭୃତି ବିଭିନ୍ନ ସ୍ଥାନ ପରିଦର୍ଶନ କରି ସେଠାକାର ଜନସାଧାରଣଙ୍କ

ଠାରୁ ତାଙ୍କି ଅଭିନନ୍ଦନ ପ୍ରାପ୍ତ ହୋଇଥିଲେ । ସେ ସମୟରେ ରୁଷଦେଶର ମହିଳା ଭେଲେଣ୍ଟିନା ତେରେସ୍କୋଭା ପୃଥିବୀର ପ୍ରଥମ ଅନ୍ତରୀକ୍ଷ ମହିଳାଯାତ୍ରୀ ରୂପେ ପୃଥିବୀରେ ପ୍ରସିଦ୍ଧି ଲାଭ କରିଥିଲେ । ତାଙ୍କର ଉଦାହରଣ ଦେଇ ଡକ୍ଟର ରାଧାକୃଷ୍ଣନ୍ ସୂଚେଇ ଦେଇଥିଲେ ଯେ, ପୃଥିବୀରେ ନାରୀ ଦୁର୍ବଳା ନୁହେଁ । ସୁବିଧା ସୁଯୋଗ ଲାଭକଲେ ନାରୀ ସବୁ କ୍ଷେତ୍ରରେ ପୁରୁଷର ସମକକ୍ଷ ହୋଇପାରିବ ।

ରାଷ୍ଟ୍ରପତି ରାଧାକୃଷ୍ଣନ୍ଙ୍କ ରୁଷଦେଶ ପରିଭ୍ରମଣ ଫଳରେ ରୁଷ୍ ଓ ଭାରତ ମଧ୍ୟରେ ଉତ୍ତମ ବୁଝାମଣା ସୃଷ୍ଟି ହୋଇଥିଲା ଓ ପରବର୍ତ୍ତୀ କାଳରେ ରୁଷ୍-ଭାରତ ମୈତ୍ରୀର ସୁଦୃଢ଼ ଅଟ୍ଟାଳିକା ସ୍ଥାପିତ ହୋଇ ପାରିଥିଲା ।

ରୁଷ୍ ଗସ୍ତରୁ ଫେରି ରାଷ୍ଟ୍ରପତି ରାଧାକୃଷ୍ଣନ୍ ଆୟାରଲ୍ୟାଣ୍ଡ ଗସ୍ତରେ ଯାଇଥିଲେ । ସେତେବେଳେ କାଶ୍ମୀର ପ୍ରଶ୍ନକୁ କେନ୍ଦ୍ର କରି ଭାରତ ଓ ଆୟାରଲ୍ୟାଣ୍ଡ ମଧ୍ୟରେ ତିକ୍ତ ମନୋଭାବ ଦେଖା ଦେଇ-ଥିଲା । ରାଧାକୃଷ୍ଣନ୍ ଆୟାରଲ୍ୟାଣ୍ଡରେ ପହଞ୍ଚି, ସେ ଦେଶର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ଆଗରେ କାଶ୍ମୀର ସମ୍ପର୍କୀୟ ପ୍ରାଞ୍ଜଳ ତଥ୍ୟ ଉପସ୍ଥାପିତ କରି ସେମାନଙ୍କ ପ୍ରଶ୍ନର ସନ୍ତୋଷଜନକ ଉତ୍ତର-ମାନ ପ୍ରଦାନ କରିଥିଲେ । ଫଳରେ ସେଠାକାର ପ୍ରେସିଡେଣ୍ଟ ଓ ପ୍ରଧାନମନ୍ତ୍ରୀଙ୍କର କାଶ୍ମୀର ପ୍ରଶ୍ନ ଉପରେ ଯେଉଁ ଭୁଲ ଧାରଣାମାନ ଥିଲା, ତାର ଅବସାନ ଘଟିଥିଲା ଓ ଦୁଇଦେଶ ମଧ୍ୟରେ ବନ୍ଧୁତା ପୁନଃପ୍ରତିଷ୍ଠିତ ହୋଇ ପାରିଥିଲା ।

ଡକ୍ଟର ରାଧାକୃଷ୍ଣନ୍ ପଣ୍ଡିତ ଜବାହରଲାଲ ନେହେରୁଙ୍କର ନିରପେକ୍ଷ ବୈଦେଶିକ ନୀତିର ଦୃଢ଼ ସମର୍ଥକ ଥିଲେ । ସେ ଏହି ନିରପେକ୍ଷ ନୀତି ସମ୍ପର୍କରେ ଆମେରିକା, ରୁଷ୍, ଇଂଲଣ୍ଡ ପ୍ରଭୃତି ଦେଶକୁ ଉତ୍ତମ ରୂପେ ବୁଝାଇବାରେ ସମର୍ଥ ହୋଇଥିଲେ । ଫଳରେ

ଯେଉଁ ସବୁ ଦେଶର ଭାରତ ପ୍ରତି ବିକ୍ରୂପଭାବ ଥିଲା, ତାହା ଅନେକାଂଶରେ ଦୂର ହୋଇ ପାରିଥିଲା ।

## ରାଧାକୃଷ୍ଣନଙ୍କ ମହାଯାତ୍ରା

ରାଧାକୃଷ୍ଣନ୍ ପ୍ରାୟ ୮୭ ବର୍ଷ ଜୀବନକାଳ ମଧ୍ୟରେ କେବଳ ଭାରତର ନରନାରୀଙ୍କୁ ନୁହେଁ, ସମଗ୍ର ଜଗତକୁ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିଥିଲେ । ସମଗ୍ର ଜଗତ ତାଙ୍କର ଜ୍ଞାନାଲୋକ ଦ୍ୱାରା ଉଦ୍‌ଭାସିତ ହେଲା । ତାଙ୍କର ଅଦମ୍ୟ ଚେଷ୍ଟା ଯୋଗୁ ଭାରତୀୟ ଦର୍ଶନ, ଭାରତୀୟ ଚିନ୍ତାଧାରା ଦେଶ ବିଦେଶରେ ଆଦର ଲାଭକଲା ।

ରାଧାକୃଷ୍ଣନ୍ ଆଲେକ୍‌ଜାଣ୍ଡାର, ନେପୋଲିଅନ୍ ପ୍ରଭୃତିଙ୍କ ପରି ଦିଗ୍‌ବିଜୟୀ ବୀର ନଥିଲେ ସତ, କିନ୍ତୁ ନିଜର ଜ୍ଞାନ ବଳରେ କୋଟି ହୃଦୟକୁ ଜୟ କରିଥିଲେ ।

ସମଗ୍ର ଜୀବନ ସତ୍ୟର ଅନୁସନ୍ଧାନରେ ଅତିବାହିତ କରିବା ପରେ ୧୯୭୫ ମସିହା ଅପ୍ରେଲ ୧୭ ତାରିଖ ଦିନ ଇହଲୀଳା ସମ୍ବରଣ କଲେ । ତାଙ୍କର ମରଦେହ ମାନ୍ଦ୍ରାଜ (ଆଧୁନିକ ତାମିଲ ନାଡ଼ୁ)ର ମଇଲାପୁର ଶ୍ମଶାନରେ ସ୍ଥାନ ଲାଭ କଲା । ସହସ୍ରାଧିକ ନରନାରୀ ବାଷ୍ପରୁଦ୍ଧ କଣ୍ଠରେ ଭାରତର ଅନ୍ୟତମ କୃତିସନ୍ତାନଙ୍କୁ ଶେଷ ବିଦାୟ ଜଣାଉଥିଲେ ।

ରାଧାକୃଷ୍ଣନ୍ ମରି ଅମର ପାଲଟି ଗଲେ ।

## ଅନ୍ୟାନ୍ୟ ପ୍ରସଙ୍ଗ

ଡକ୍ଟର ରାଧାକୃଷ୍ଣନ୍ ଅଧ୍ୟାପନା ଦିଗରେ ମନୋନିବେଶ କରି ଛାତ୍ର, ଅଧ୍ୟାପକ ଓ କଲେଜ ପରିଚାଳକ ସମସ୍ତଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ । ସେ ଅତି ଅଳ୍ପ ବୟସରୁ ଭାରତର ବିଖ୍ୟାତ

ଦାର୍ଶନିକ ରୂପେ ଖ୍ୟାତି ଅର୍ଜନ କଲେ ଏବଂ ଭାରତୀୟ ଦର୍ଶନର ସୁଦକ୍ଷ ବ୍ୟାଖ୍ୟାକାର ରୂପେ ପୃଥିବୀର ସର୍ବତ୍ର ସୁପରିଚିତ ହେଲେ । ସେ 'ଇଣ୍ଟର ନେସନାଲ୍ ଜର୍ଣ୍ଣାଲ୍ ଅଫ୍ ଏଥିକସ୍', 'ମୋନିଷ୍ଟ', କ୍ୱେଷ୍ଟ ପ୍ରଭୃତି ପ୍ରସିଦ୍ଧ ପତ୍ରିକାରେ ସ୍ୱୀୟମତ ଲେଖାଲେଖି କରୁ-ଥିଲେ । ତାଙ୍କର ବିଭିନ୍ନ ଚିନ୍ତାମୂଳକ ତଥା ଗବେଷଣାତ୍ମକ ପ୍ରବନ୍ଧଗୁଡ଼ିକ ପଣ୍ଡିତମଣ୍ଡଳୀର ଦୃଷ୍ଟି ଆକର୍ଷଣ କରିବାରେ ସକ୍ଷମ ହୋଇଥିଲା ।

ରାଧାକୃଷ୍ଣନ୍‌ଙ୍କ ଜୀବନକାଳ ମଧ୍ୟରେ ୧୯୫୬ ମସିହା ଏକ ଗୁରୁତ୍ୱପୂର୍ଣ୍ଣ ବର୍ଷ । ଏହି ବର୍ଷ ସେ ପୃଥିବୀ ପର୍ଯ୍ୟଟନ କଲାବେଳେ ରୁଷ୍ ଦେଶରେ ବୁଲଗାନିନ୍‌ଙ୍କ ସହ ବନ୍ଧୁତ୍ୱପୂର୍ଣ୍ଣ କଥାବାର୍ତ୍ତା କରିଥିଲେ । ରୁଷ-ଭାରତ ମୈତ୍ରୀ ସ୍ଥାପନ ଦିଗରେ ରାଧାକୃଷ୍ଣନ୍‌ଙ୍କ ଦାନ ଅତୁଳନୀୟ । ୧୯୫୬ ମସିହାର ପୃଥିବୀ ପର୍ଯ୍ୟଟନ ବେଳେ ବହୁ ୟୁରୋପୀୟ ରାଷ୍ଟ୍ରର ବିଶ୍ୱବିଦ୍ୟାଳୟମାନେ ତାଙ୍କୁ 'ଡକ୍ଟର' ଉପାଧିରେ ଭୂଷିତ କରିଥିଲେ । ପୁଣି ଏହି ବର୍ଷ ରାଧାକୃଷ୍ଣନ୍‌ଙ୍କ ପତ୍ନୀ ବିୟୋଗ ଘଟିଥିଲା ।

୧୯୫୪ ମସିହାରେ ଡକ୍ଟର ରାଧାକୃଷ୍ଣନ୍ ଭାରତ ସରକାରଙ୍କ ସର୍ବୋଚ୍ଚ ସମ୍ମାନ 'ଭାରତରତ୍ନ' ଉପାଧି ଲାଭ କରିଥିଲେ ।

ରାଧାକୃଷ୍ଣନ୍ ଯେ କେବଳ ପ୍ରତିଭା କ୍ଷେତ୍ରରେ ଖ୍ୟାତି ଅର୍ଜନ କରିଥିଲେ ତାହା ନୁହେଁ, ତାଙ୍କର ବ୍ୟକ୍ତିତ୍ୱ ମଧ୍ୟ ମହନୀୟ ଥିଲା । ସେ ତ୍ୟାଗୀ, ଶାନ୍ତିକାମୀ ଓ ଉଦାରମନା ଥିଲେ । ସରଳ "ଜୀବନ ଓ ଉଚ୍ଚଚିନ୍ତା ପୋଷଣ"—ଏହି ଭାରତୀୟ ମହାନ ଆଦର୍ଶ ତାଙ୍କ ଜୀବନରେ ପ୍ରତିଫଳିତ ହୋଇଥିଲା ।"

ରାଧାକୃଷ୍ଣନ୍ ତାଙ୍କର ବାସଗୃହ ସମେତ ବହୁ ଅର୍ଥ ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ଦାନ କରି ଦେଇଥିଲେ । ପୁଣି ଧାର୍ଯ୍ୟ ପାରିଶ୍ରମିକ ନେବାକୁ ମଧ୍ୟ ସେ ଇଚ୍ଛା କରି ନଥିଲେ । ଆଜୀବନ

ନିରାମିଷାଶୀ ଜୀବନଯାପନ କରି ସେ ଭୋଗ ବିଳାସ, ବହୁମୂଲ୍ୟବସ୍ତୁ ପରିଧାନ ପ୍ରତି ଆସକ୍ତ ନଥିଲେ । ଏ ଦିଗରେ ସେ ଜନମାନବ ମହାତ୍ମାଗାନ୍ଧୀ ଓ ଆମେରିକା ରାଷ୍ଟ୍ରପତି ଲିଙ୍କନ୍‌ଙ୍କ ସଙ୍ଗରେ ତୁଳନୀୟ ।

ରାଧାକୃଷ୍ଣନ୍‌ଙ୍କ କଥାରେ ଓ କାର୍ଯ୍ୟରେ ସମ୍ପୂର୍ଣ୍ଣ ମେଳ ରହୁଥିବାରୁ ସେ ସମସ୍ତଙ୍କର ଆଦର୍ଶ ସ୍ଥାନୀୟ ଥିଲେ ।

## ପ୍ରକାଶିତ ରଚନାବଳୀ ( ଇଂରାଜୀ ଓ ଅନ୍ୟାନ୍ୟ )

ରାଧାକୃଷ୍ଣନ୍ କେବଳ ଅଧ୍ୟାପକ, କୁଳପତି ବା ରାଷ୍ଟ୍ରପତି ନ ଥିଲେ, ସେ ଜଣେ ବିଖ୍ୟାତ ଲେଖକ ମଧ୍ୟ ଥିଲେ । ତାଙ୍କର କେତୋଟି ବିଖ୍ୟାତ ଇଂରାଜୀ ଗ୍ରନ୍ଥର ନାମ ନିମ୍ନରେ ଦିଆଗଲା—

* ରେନ୍ ଅଫ୍ ରିଲିଜିଅନ୍ କଣ୍ଟେମ୍ପୋରାରି ଫିଲୋସଫି
* ଦ' ହିନ୍ଦୁ ଭିଉ ଅଫ୍ ଲାଇଫ୍
* ଆନ୍ ଆଇଡ଼ିଏଲିଷ୍ଟ ଭିଉ ଅଫ୍ ଲାଇଫ
* ସେନ୍ ଅଫ୍ସ ରିଲିଜିଅନ୍ ଇନ୍ କଣ୍ଟେମ୍ପୋରାରି ଫିଲୋସଫି
* ଇଷ୍ଟ ଆଣ୍ଡ୍ ଓ୍ୱେଷ୍ଟ ଇନ୍ ରିଲିଜିଅନ୍
* ଦ' ରିଲିଜିଅନ୍ ଉଇନଡ୍
* ଗୌତମ ବୁଦ୍ଧ
* ଇଣ୍ଡିଆ ଆଣ୍ଡ୍ ଚୀଇନା
* ପୋଲିଟିକ୍ସ ଆଣ୍ଡ୍ ଓ୍ୱାର
* ବ୍ରହ୍ମସୂତ୍ର
* ଇଣ୍ଡିଆନ ଫିଲୋସଫି

ଏହି ଗ୍ରନ୍ଥଗୁଡ଼ିକ ସମଗ୍ର ବିଶ୍ୱବାସୀଙ୍କ ଦ୍ୱାରା ଆଦୃତ ଓ ବିଶ୍ୱ-ସାହିତ୍ୟ ଭଣ୍ଡାରର ଅମୂଲ୍ୟ ସମ୍ପଦ ରୂପେ ବିବେଚିତ ।

ଡକ୍ଟର ରାଧାକୃଷ୍ଣନ୍‌ଙ୍କ ଇଣ୍ଡିଆନ ଫିଲୋସଫି ଗ୍ରନ୍ଥରେ ଭାରତୀୟ ଦର୍ଶନର ସ୍ୱରୂପକୁ ବିଶଦ ଭାବରେ ବର୍ଣ୍ଣନା କରାଯାଇଛି ଏଥିରେ ସେ ବିଶ୍ୱତତ୍ତ୍ୱ ଜ୍ଞାନ ଓ ତୁଳନାତ୍ମକ ତତ୍ତ୍ୱଜ୍ଞାନର ପ୍ରତିଷ୍ଠା କରି ଅଛନ୍ତି ।

'ଦି' ରେନ୍ ଅଫ ରିଲିଜିଅନ୍ ଇନ୍ କଣ୍ଟେମ୍ପୋରାରି ଫିଲୋସଫି ଗ୍ରନ୍ଥରେ ସେ ଦର୍ଶାଇ ଦେଇ ଅଛନ୍ତି ଯେ, ପାଶ୍ଚାତ୍ୟ ଦର୍ଶନ ଧର୍ମ-ବିଶ୍ୱାସ ଦ୍ୱାରା ବହୁ ପରିମାଣରେ ପ୍ରଭାବିତ ।

ତାଙ୍କ ଦ୍ୱାରା ପ୍ରଣୀତ ପ୍ରତ୍ୟେକ ଗ୍ରନ୍ଥ ଭାରତୀୟ ଦର୍ଶନର ଉତ୍କର୍ଷତା ପ୍ରତିଷ୍ଠା କରିଛି ।

ପୁଣି ସାହିତ୍ୟ ସାଧନା କ୍ଷେତ୍ରରେ ତାଙ୍କର ଅବଦାନ ଯଥେଷ୍ଟ ବେଶୀ । ସ୍ୱଲିଖିତ ଓ ସଂପାଦିତ ପୁସ୍ତକର ସଂଖ୍ୟା ଦୁଇ ଶହରୁ ଅଧିକ । ଏତଦ୍ୱାରା ସାହିତ୍ୟ ସଂସାର ସମୃଦ୍ଧି ଲାଭ କରିଛି ।

## ଉପସଂହାର

କୁହାଯାଏ ଯେ, ସ୍ୱାମୀ ବିବେକାନନ୍ଦଙ୍କ ପରେ ଡକ୍ଟର ରାଧାକୃଷ୍ଣନ୍ ହେଉଛନ୍ତି ଦ୍ୱିତୀୟ ବ୍ୟକ୍ତି ଯେ କି ଭାରତୀୟ ଚିନ୍ତା-ଧାରା ଜନିତ ସଂସ୍କୃତି ଓ ପରମ୍ପରାକୁ ପାଶ୍ଚାତ୍ୟ ଦେଶମାନଙ୍କ ଆଗରେ ଅତି ଦୃଢ଼ ଭାବରେ ଉଦ୍ଘୋଷିତ କରି ପଣ୍ଡିତ ମଣ୍ଡଳର ଧନ୍ୟବାଦର ପାତ୍ର ହୋଇ ପାରିଥିଲେ ।

ଏ କଥା ସତ୍ୟ ଯେ, ଡକ୍ଟର ରାଧାକୃଷ୍ଣନ୍ ଜଣେ ପ୍ରତ୍ୟକ୍ଷ ସ୍ୱାଧୀନତା ସଂଗ୍ରାମୀ ନଥିଲେ କି ଅନ୍ୟାନ୍ୟ ନେତାମାନଙ୍କ ପରି କାରାବରଣ କରି ନଥିଲେ । କିନ୍ତୁ ପରୋକ୍ଷରେ ସେ ସ୍ୱାଧୀନତା ସଂଗ୍ରାମ ପାଇଁ ବହୁ କାର୍ଯ୍ୟ ସଂପାଦନ କରିଥିଲେ । ମହାତ୍ମାଗାନ୍ଧୀଙ୍କ ଅହିଂସା ସଂଗ୍ରାମ ଭାରତୀୟ ସଂସ୍କୃତିର ପ୍ରତୀକ ଥିଲା । ଏଥିପାଇଁ

ଡକ୍ଟର ରାଧାକୃଷ୍ଣନ୍ ଗାନ୍ଧିଜୀଙ୍କ ଅହିଂସା ନୀତିକୁ ସମର୍ଥନ କରି ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ କରୁଥିଲେ । ଥରେ ସେ ଆହ୍ଲାବାଦର ସାକ୍ଷାନ୍ତ ଅଭିଭାଷଣରେ, ତତ୍କାଳୀନ ଉତ୍ତର ପ୍ରଦେଶର ଗଭର୍ଣ୍ଣରଙ୍କ ଉପସ୍ଥିତିରେ ବଜ୍ରଗମ୍ଭୀର କଣ୍ଠରେ ପ୍ରକାଶ କରିଥିଲେ ଯେ, ଭାରତର ନୈତିକ ଅଧପତନ ପାଇଁ ଇଂରେଜ ରାଜନୀତି ହିଁ ଦାୟୀ । ଏହି ଅଧପତନରୁ ମୁକ୍ତି ପାଇବାକୁ ହେଲେ ଆମର ରାଜନୈତିକ ସ୍ୱାଧୀନତା ଏକାନ୍ତ କାମ୍ୟ । ଏହା ଜନସାଧାରଣଙ୍କ ଚିନ୍ତାରାଜ୍ୟରେ ଚହଳ ସୃଷ୍ଟି କରିଥିଲା । ପୁଣି ଅଧ୍ୟାପକ ଓ କୁଳପତି ଭାବରେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କରୁଥିଲା ବେଳେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ ଉତ୍କୃଷ୍ଟ ଯୋଦ୍ଧା ଗଠନ କରିବାରେ ଯେ ମନପ୍ରାଣ ତାଙ୍କ ଦେଇଥିଲେ । ଫରାସୀ ରକ୍ତବିପ୍ଳବ ବେଳେ ଯେପରି ସେ ଦେଶର ରୁଷୋ ଓ ଭଲ୍ଟାୟାର ସେମାନଙ୍କ ଅଭିଭାଷଣମାନଙ୍କରେ ଫରାସୀ ଲୋକଙ୍କ ମନରେ ଆତ୍ମବିଶ୍ୱାସ ସୃଷ୍ଟି କରିଥିଲେ । ରାଧାକୃଷ୍ଣନ୍, ସେହିପରି ତାଙ୍କର ଓଜସ୍ୱିନୀ ଭାଷା ଓ ଲେଖା ମାଧ୍ୟମରେ ଭାରତବର୍ଷରେ ଗଣଚେତନା ସୃଷ୍ଟି କରିବା ଦିଗରେ ସଫଳ ହୋଇଥିଲେ । ତାଙ୍କ ଲେଖା ପଢ଼ି ପୃଥିବୀବାସୀ ଭାରତର ସ୍ୱାଧୀନତା ଆନ୍ଦୋଳନ ପ୍ରତି ସହାନୁଭୂତିଶୀଳ ହୋଇଥିଲେ ।

ଡକ୍ଟର ରାଧାକୃଷ୍ଣନ୍‌ଙ୍କ ପ୍ରଚେଷ୍ଟାରେ ହିଁ ଅଖିଳ ଭାରତୀୟ ଫିଲୋସଫିକାଲ କଂଗ୍ରେସ ପ୍ରତିଷ୍ଠା ଲାଭ କରିଥିଲା । ଫଳରେ ଭାରତୀୟ ଦର୍ଶନର ପୁନରୁଦ୍ଧାର ସମ୍ଭବ ହେଲା । ପୁଣି ହାୱାଇ ବିଶ୍ୱବିଦ୍ୟାଳୟରେ ପ୍ରାଚ୍ୟ-ପାଶ୍ଚାତ୍ୟ ଦାର୍ଶନିକମାନଙ୍କର ପର୍ଯ୍ୟାୟ କ୍ରମେ ତିନୋଟି ସମ୍ମେଳନ ଅନୁଷ୍ଠିତ ହୋଇ ପ୍ରାଚ୍ୟ-ପାଶ୍ଚାତ୍ୟ ଦର୍ଶନ ମଧ୍ୟରେ ସମନ୍ୱୟ ସ୍ଥାପିତ ହୋଇଥିଲା । ଏଥିପାଇଁ ଡକ୍ଟର ରାଧାକୃଷ୍ଣନ୍‌ଙ୍କ ଯଥେଷ୍ଟ ଅବଦାନ ରହିଛି ।

ଡକ୍ଟର ରାଧାକୃଷ୍ଣନ୍ କେବଳ ଦାର୍ଶନିକ ନୁହନ୍ତି ଜଣେ ଅତ୍ୟନ୍ତ ଧର୍ମପରାୟଣ ବ୍ୟକ୍ତି ଥିଲେ । ସେ କୌଣସି ଧର୍ମକୁ ଘୃଣା କରୁ ନଥିଲେ । ବିଭିନ୍ନ ଧର୍ମାନୁଷ୍ଠାନରେ, ଅର୍ଥାତ୍ ମନ୍ଦିର, ମସଜିଦ୍ ଗୀର୍ଜାମାନଙ୍କରେ ସେ ଧର୍ମ ବିଷୟରେ ଆଲୋଚନା କରୁଥିଲେ । ଏଥିରୁ ତାଙ୍କର ଧର୍ମ ନିରପେକ୍ଷତା ପ୍ରମାଣିତ ହୁଏ ।

ଡକ୍ଟର ରାଧାକୃଷ୍ଣନଙ୍କ ଯୋଗୁ କେବଳ ଭାରତବାସୀ ନୁହନ୍ତି ସମଗ୍ର ମାନବ ସମାଜ ବିଭିନ୍ନ ଭାବରେ ଉପକୃତ ହୋଇଛନ୍ତି । ଏଣୁ ସେ ପୃଥିବୀର ଜଣେ ସ୍ମରଣୀୟ ମହାପୁରୁଷ ଭାବରେ ପ୍ରାତଃ ସ୍ମରଣୀୟ ।

## ରାଧାକୃଷ୍ଣନ୍ ଓ ଗୁରୁଦିବସ

ମୃତ୍ୟୁ ପରେ ଜନ୍ମ ଦିବସ ପାଳନ କରିବା ଆମ ଦେଶର ସଂସ୍କୃତି ଓ ପରମ୍ପରା ବିରୋଧୀ । ତେଣୁ ମହାପୁରୁଷମାନଙ୍କର ଆଦର୍ଶର ଅନୁଶୀଳନ ଓ ସ୍ମରଣ ପାଇଁ ବିଭିନ୍ନ ଜୟନ୍ତୀ ପାଳନ କରାଯାଇଥାଏ । ମହର୍ଷି ବ୍ୟାସଦେବଙ୍କ ଜନ୍ମ ଦିବସକୁ ଗୀତା ଜୟନ୍ତୀ, ଭାଗବତକାର ଜଗନ୍ନାଥ ଦାସଙ୍କ ଜନ୍ମ ଦିବସକୁ 'ଭାଗବତ ଜୟନ୍ତୀ', ଗାନ୍ଧୀ ଜନ୍ମ ଦିବସକୁ 'ଚରଖା ଜୟନ୍ତୀ', ବିନୋବାଜୀଙ୍କ ଜନ୍ମ ଦିବସକୁ 'ଭୂ ଜୟନ୍ତୀ' ଓ ଜବାହରଲାଲଙ୍କ ଜନ୍ମ ଦିବସକୁ 'ଶିଶୁଦିବସ ରୂପେ ପାଳନ କରାଯାଉଛି । ଏହି ଦିନ-ମାନଙ୍କରେ ସମ୍ପୃକ୍ତ ମହାପୁରୁଷମାନଙ୍କୁ ସ୍ମରଣ କରାଯାଇଥାଏ ଓ ସେମାନଙ୍କ ଆଦର୍ଶରେ ପରିଚାଳିତ ହେବାକୁ ସଂକଳ୍ପ କରାଯାଇଥାଏ ।

୧୯୬୨ ମସିହାରୁ, ଅର୍ଥାତ୍ ରାଧାକୃଷ୍ଣନଙ୍କ ଜୀବିତାବସ୍ଥାରୁ ତାଙ୍କର ଜନ୍ମଦିବସ ସେପ୍ଟେମ୍ବର ୫ ତାରିଖକୁ ଦେଶ ସାରା ଗୁରୁଦିବସ ରୂପେ ପାଳନ କରି ଆସୁଅଛନ୍ତି । କାରଣ ରାଧାକୃଷ୍ଣନ୍

ଜଣେ ଆଦର୍ଶ ସ୍ଥାନୀୟ ଗୁରୁଥିଲେ । ତାଙ୍କ ଜନ୍ମ ଦିବସକୁ ଗୁରୁଦିବସ ରୂପେ ପାଳନ କରି କେବଳ ତାଙ୍କୁ ନୁହେଁ, ତାଙ୍କପରି ସମସ୍ତ ଆଦର୍ଶ ସ୍ଥାନୀୟ ଗୁରୁମାନଙ୍କୁ ଭକ୍ତି ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଇଥାଏ । ସେମାନଙ୍କ ଆଦର୍ଶର ଅନୁଶୀଳନ ଓ ଅନୁସରଣ ପାଇଁ ପ୍ରେରଣା ଲାଭ କରିବା ଗୁରୁଦିବସ ପାଳନର ତାତ୍ପର୍ଯ୍ୟ ଅଟେ ।

ବୌଦ୍ଧ ଦର୍ଶନରେ ଗୁରୁଙ୍କୁ 'କଲ୍ୟାଣ ମିତ୍ର' ଓ ଉପନିଷଦରେ 'ଋଷି' ଆଖ୍ୟା ଦିଆଯାଇଛି । ନାରଦ ସ୍ମୃତିରେ କୁହାଯାଇଛି ଯେ, ଗୁରୁଙ୍କୁ ଦର୍ଶନ କରିବା ମାତ୍ରେ ସାଷ୍ଟାଙ୍ଗ ପ୍ରଣିପାତ କରିବ । ବାପୁଜୀଙ୍କ ମତରେ, ଶିକ୍ଷକ ହେଉଛନ୍ତି 'ଗ୍ରାମସେବକ' । ହୃଦୟ ତାଙ୍କର 'ସାକ୍ଷୀ' ଓ 'କର୍ତ୍ତବ୍ୟ' ତାଙ୍କର ପୁରସ୍କାର । ଗୁରୁ ସ୍ଥିତ ପ୍ରଜ୍ଞ ହେଲେ କେବଳ ଶିଷ୍ୟ ବା ଛାତ୍ରମାନଙ୍କର ନୁହେଁ, ସର୍ବ-ସାଧାରଣଙ୍କର ଭକ୍ତିଭାଜନ ହୋଇ ପାରିବେ ।

ରାଧାକୃଷ୍ଣନ୍ ଆଦର୍ଶ ଗୁରୁଥିଲେ ଓ ଦେଶର ସର୍ବ-ସାଧାରଣଙ୍କର ଭକ୍ତିଭାଜନ ହୋଇ ପାରିଥିଲେ । ଏବେ ମଧ୍ୟ ଏ ଦେଶର ଗୁରୁକୁଳ ଆଦର୍ଶ କାର୍ଯ୍ୟକଳାପରେ ସର୍ବସାଧାରଣଙ୍କ ଭକ୍ତିଭାଜନ ହୋଇପାରିବେ ।



# ଶ୍ରୀ ଭଗୀରଥି ନେପାକଙ୍କ
## ଭାରତ ପ୍ରଦୀପ ଗ୍ରନ୍ଥମାଳା ୨୦ ଖଣ୍ଡ

| | |
|---|---|
| ବିବେକାନନ୍ଦ | ଟ ୫-୦୦ |
| ଶଙ୍କରାଚାର୍ଯ୍ୟ | ଟ ୫-୦୦ |
| ଶ୍ରୀ ଚୈତନ୍ୟ | ଟ ୫-୦୦ |
| ଶ୍ରୀରାମକୃଷ୍ଣ | ଟ ୫-୦୦ |
| ମହିମା ଗୋସାଇଁ | ଟ ୫-୦୦ |
| ନିଗମାନନ୍ଦ | ଟ ୪- ୦ |
| ଅରବିନ୍ଦ | ଟ ୪-୦୦ |
| ଶିବାନନ୍ଦ | ଟ ୪-୦୦ |
| ନାନକ | ଟ ୪-୦୦ |
| ବୁଦ୍ଧଦେବ | ଟ ୪-୦୦ |
| ରାଧାକୃଷ୍ଣନ୍ | ଟ ୩-୦୦ |
| ମହାବୀର | ଟ ୪-୦୦ |
| ପ୍ରେମଭୋଇ | ଟ ୪-୦୦ |
| ନେତାଜୀ | ଟ ୪-୦୦ |
| ଶାସ୍ତ୍ରୀଜୀ | ଟ ୪-୦୦ |
| ବାପୁଜୀ | ଟ ୪-୦୦ |
| ଗୁରୁଜୀ | ଟ ୪-୦୦ |
| ରାଜାଜୀ | ଟ ୪-୦୦ |
| ଲାଲାଜୀ | ଟ ୪-୦୦ |
| ତିଳକଜୀ | ଟ ୪-୦୦ |